

ଲୋକ କଲ୍ୟାଣ ଗ୍ରନ୍ଥ ମାଳା

# ଜ୍ଞାନକୋଷ

ସାମାଜିକ ଶିକ୍ଷା ବିଭାଗ, ଓଡ଼ିଶା ସରକାର

ପ୍ରକାଶକଃ—

**ସାମାଜିକ ଶିକ୍ଷା ବିଭାଗ**

ଓଡ଼ିଶା ସରକାର

ପ୍ରଥମ ପ୍ରକାଶ

ତିନିହଜାର ଖଣ୍ଡ

୧୯୫୭

ମୁଦ୍ରାକର

ଶ୍ରୀ ରାମଚନ୍ଦ୍ର ଦାସ

**ନବଭାରତ ପ୍ରେସ**

କଟକ

# ପରିଚୟ

ଶ୍ରୀମାନ୍ ନରେନ୍ଦ୍ରନାଥ ମିଶ୍ର 'ଜ୍ଞାନକୋଷ' ଉପରେ ଏକ ସୁନ୍ଦର ପ୍ରବଂଧ ଲେଖିଛନ୍ତି । ପଢ଼ି ଖୁସି ହେଲି । ଜାତି ବଡ଼ ହୁଏ ଜ୍ଞାନ ଉପରେ ଠିଆ ହୋଇ । ଇଂରାଜିରେ ଏକ କଥା ଅଛି—ଜ୍ଞାନ ହିଁ ଶକ୍ତି । ତାହା ଶ୍ୱେତଜାତି ଓ ସେମାନଙ୍କୁ ଅନୁକରଣ କରିଥିବା ଜାପାନୀ ପ୍ରଭୃତି ଏସିଆବାସୀ ପ୍ରମାଣିତ କରି ପାରିଛନ୍ତି । ମିଥ୍ୟାଜ୍ଞାନ, କୁସଂସ୍କାର, କୂପ-ମଣ୍ଡୂକତା ପ୍ରଭୃତିକୁ ଯାକି ଧରି, କାହାରି ପକ୍ଷରେ ଉପରକୁ ଉଠିବା ସମ୍ଭବ ନୁହେଁ । ତେଣୁ ଆମ ଦେଶରେ ନାନାବିଧ ଜ୍ଞାନର ବହୁଳ ପ୍ରଚାରର ଆବଶ୍ୟକ । ନରବର୍ତ୍ତିନ୍ଲଘବରେ ପ୍ରଚାର କଲେ ଲୋକମାନେ କ୍ରମେ କ୍ରମେ ସେଥିରୁ ଅନେକାଂଶ ନିଶ୍ଚୟ ଗ୍ରହଣ କରିବେ । ଜ୍ଞାନର ପ୍ରଚାର ପାଇଁ ଜ୍ଞାନକୋଷ ବା ଏନ୍‌ସାଇକ୍ଲୋପିଡ଼ିଆ ଗୋଟିଏ ସୁବିଧା ଉପାୟ । ଏଥିରେ ଗୋଟିଏ ପୁସ୍ତକରେ ମାନବର ସକଳ ଚିନ୍ତାର ପରିଚୟ ପାଠକ ପାଇ ପାରିବେ । ସକଳ ଦେଶର ସକଳ ଜାତିର କଥା ଆମେ ଏଥିରୁ ପାଇ ପାରିବା । ସେଥିପାଇଁ ସଭ୍ୟ ଦେଶମାନଙ୍କରେ ପ୍ରତି ଘରେ ଗୋଟିଏ ନା ଗୋଟିଏ ପ୍ରକାରର ଜ୍ଞାନକୋଷ ଦେଖିବାକୁ ମିଳିବ ।

ଓଡ଼ିଆରେ ଜ୍ଞାନକୋଷ ନ ଥିବାରୁ ଏ ଦିଗରେ ମୁଁ ସାମାନ୍ୟ ଉଦ୍‌ଯୋଗ କରିଛି ମାତ୍ର । କିନ୍ତୁ ଦେଖୁଛି ଅନେକ ଶିକ୍ଷିତ ଲୋକଙ୍କ ନିକଟରେ ମଧ୍ୟ 'ଜ୍ଞାନକୋଷ'ର ଧାରଣା ବଡ଼ ଅସ୍ପଷ୍ଟ । ଶ୍ରୀମାନ୍ ନରେନ୍ଦ୍ରନାଥଙ୍କର ଏଇ କ୍ଷୁଦ୍ର ପ୍ରବନ୍ଧଟି ଏ ଦିଗରେ ଅନେକଙ୍କୁ ଜ୍ଞାନ-କୋଷର ଏକ ସ୍ପଷ୍ଟ ଧାରଣା ଦେବ ବୋଲି ମୋର ବିଶ୍ୱାସ । ଜ୍ଞାନ-କୋଷ କେବଳ ପଣ୍ଡିତମାନଙ୍କର ମାନସିକ ବିଳାସ ନୁହେଁ । ଜାତି-ଗଠନରେ ଏହାର ଅଂଶ-ଗ୍ରହଣ ଅବର୍ଜ୍ୟ, ଏହା ଆମଦେଶରେ ଜନସାଧାରଣ ବୁଝିବା ଉଚିତ । ନରେନ୍ଦ୍ର ନାଥଙ୍କର ଲେଖାଟି ପଢ଼ିଲେ ଯେ କୌଣସି ପାଠକ ତାହା ବୁଝି ପାରିବେ ଓ ଏ ଦିଗରେ ଉଦ୍‌ବୁଦ୍ଧ ହେବେ ବୋଲି ଆଶା କରେ ।

ବିନୋଦ କାନୁନଗୋ

# ଜ୍ଞାନକୋଷ

## ଜ୍ଞାନକୋଷର ପ୍ରୟୋଜନ

ମନୁଷ୍ୟ ସ୍ୱଭାବତଃ ଜିଜ୍ଞାସୁ । ଯେଉଁଦିନୁ ପ୍ରଥମ କରି ସେ ଚିନ୍ତା କଲା, ସେହିଦିନୁ ପ୍ରଶ୍ନ କରିବାକୁ ଶିଖିଲା । ବହୁ ଶ୍ରମ ଓ ସାଧନା ବଳରେ ମନୁଷ୍ୟର ଜିଜ୍ଞାସୁ ମନ ସଭ୍ୟତାର ଆଦିକାଳରୁ ଆଜି ପର୍ଯ୍ୟନ୍ତ ବିପୁଳ ଜ୍ଞାନ ସମୁଦ୍ର ସୃଷ୍ଟି କରିଛି । ପୂର୍ବେ ଏ ସମୁଦ୍ରର ସ୍ପର୍ଶ ଅତି ଅଳ୍ପ ସଂଖ୍ୟକ ପଣ୍ଡିତଙ୍କୁ ମିଳୁଥିଲା । ଆଜି ଗଣତନ୍ତ୍ର ଯୁଗ । ଜ୍ଞାନ ମଧ୍ୟ ଗଣର ହେବ—ଏହା ଆଜିର ଆଦର୍ଶ । ସାଧାରଣ ମନୁଷ୍ୟ ମନରେ, ମନୁଷ୍ୟ, ମନୁଷ୍ୟର ପରିବେଶ, ଉଦ୍ଭାବନ, ସାଧନ ଓ ସିଦ୍ଧି ବିଷୟରେ ପ୍ରତି ମୁହୂର୍ତ୍ତରେ ଯେଉଁସବୁ ପ୍ରଶ୍ନ ଉଠେ, ସେ ସମସ୍ତର ଉତ୍ତର ନିଜ ହାତ ପାଆନ୍ତାରେ ପାଇବାକୁ ଚାହେଁ । ସେଥିଲାଗି ଲୋଡ଼ା 'ଜ୍ଞାନକୋଷ' । ଆଧୁନିକ ସଭ୍ୟମାନବର ବିପୁଳ ଜିଜ୍ଞାସା ଏ ଯୁଗର ଜ୍ଞାନକୋଷ କିପରି ପୂର୍ଣ୍ଣ କରିଥାଏ—ତାହାର ଏକ ସୁନ୍ଦର ବ୍ୟାଖ୍ୟା ଆମେରିକାର 'ବିଶ୍ୱଗ୍ରନ୍ଥ ଜ୍ଞାନକୋଷ' ଦେଇଛନ୍ତି । ଆମ ଆଖି ଆଗରେ ଚିତ୍ର ପ୍ରଜାପତିଟିଏ ଉଡ଼ିଗଲେ, ଆମେ ପ୍ରଶ୍ନ କରୁଁ ଏ କଣ ? ଆମର ଟେଢ଼ା ଉଡ଼ାଜାହାଜଟିଏ ଉଡ଼ିବାର ଦେଖିଲେ, ପଚାରୁଁ ଏ ଉଡ଼ୁଛି କିପରି ? ଆମର ବୃକ୍ଷ ଜନ୍ମ ନିୟନ୍ତ୍ରଣ ବା ବନ୍ୟଜୀବ ସଂରକ୍ଷଣ ସମସ୍ୟା କଥା

ପଢ଼ିଲେ ଜାଣିବାକୁ ଚାହୁଁ, ଏହାର ସମାଧାନ ଲୋଡ଼ା କାହିଁକି ? ଅତୀତ ଘଟଣା ମନେ ପଡ଼ିଲେ, ପଚାରି ବସୁଁ ଏହା ଘଟିଥିଲା କେବେ ? କୌଣସି ବିଖ୍ୟାତ ବ୍ୟକ୍ତିଙ୍କ ନାମ ଶୁଣିଲେ ପଚାରୁଁ ସେ କିଏ ? ବାସ୍ତବିକ ଏହି କ'ଣ, କିପରି, କାହିଁକି, କେଉଁଠି, କେବେ ଓ କିଏ ପ୍ରଶ୍ନଗୁଡ଼ିକ ସଭ୍ୟମାନବର ଦୈନନ୍ଦିନ ଜୀବନର ନିତ୍ୟ ସହଚର । ଏହି ସମସ୍ତ ପ୍ରଶ୍ନର ଯେଉଁ ଉତ୍ତର ମନୁଷ୍ୟର ଅତ୍ୟାଧୁନିକତମ ଜ୍ଞାନ ପରିଧିରୁ ମିଳିବା ସମ୍ଭବ, ତାହା ପ୍ରଦାନ କରିବାକୁ ଜ୍ଞାନକୋଷର ସୃଷ୍ଟି ହୋଇଥାଏ ।

## ଜାତି ଗଠନର ଭୂମିକା

ଆମେ ଦେଶକୁ ନୂଆ ଭାବରେ ଗଢ଼ିବାକୁ ଚାହୁଁ । ଦେଶକୁ ଗଢ଼ିବାକୁ ହେଲେ, ପ୍ରଥମେ ଦେଶବାସୀଙ୍କ ମନ ନୂଆ ଭାବରେ ଗଢ଼ିବାକୁ ହେବ । ଏବେ ଆମ ଦେଶର ଜନସାଧାରଣଙ୍କ ମନରେ ଅନ୍ଧବିଶ୍ୱାସ ପୂରି ରହିଛି । ଏ ବିଜ୍ଞାନ ଯୁଗରେ ମଣିଷ ଯେ ମଣିଷର ଭାଗ୍ୟ ଗଢ଼ିପାରେ ଏ ବିଶ୍ୱାସ ଆମ ମନରେ ଜନ୍ମୁନାହିଁ । ସବୁ କଥାକୁ ଆମେ ଅଗଭୀର ହେଉ ନାହୁଁ । ଆମ ମନକୁ ସର୍ଜନ-କ୍ଷମ କରିବା, ହେତୁବାଦୀ କରିବା, ଦେଶ ଓ ଜାତିକୁ ଗଢ଼ିବା ଲାଗି ସମସ୍ତଙ୍କ ପ୍ରାଣରେ ନୂଆ ଉନ୍ମାଦନା ଜଗାଇବାର ବହୁ ଉପାୟ ଅବଲମ୍ବିତ ହେଉଛି । ଆଧୁନିକ ଜଗତରେ କୌଣସି ଜାତିକୁ ବଡ଼ ହେବାକୁ ହେଲେ ତାକୁ ଆଧୁନିକ ଜଗତର ଜ୍ଞାନଧାରା ସହିତ ପରିଚିତ ହେବାକୁ ହେବ । ଯେଉଁ ଜ୍ଞାନବଳରେ ମନୁଷ୍ୟ ବହୁ ଅନାବୃଷ୍ଟି ଅବଗ୍ରହର ଗତିରୋଧ କରିପାରିଛି, ବହୁ ନୂତନ ହାତହତିଆର ଗଢ଼ି ପ୍ରକୃତି ଉପରେ ନୂଆ ଅଧିକାର ସାବ୍ୟସ୍ତ କରିଛି—ସେ ସମସ୍ତ ଜ୍ଞାନର ଅଧିକାରୀ ହେବାକୁ ହେବ । ଆଧୁନିକ ଦୃଷ୍ଟିକୋଣରୁ ସଙ୍କଳିତ ଜ୍ଞାନ-କୋଷ ଜରିଆରେ ଏପରି ଜ୍ଞାନକୁ ସହଜଲଭ୍ୟ, ସାଧାରଣଲଭ୍ୟ କରା-ଯାଇଥାଏ । ଅଷ୍ଟାଦଶ ଶତକରେ ଫରାସୀ ଦାର୍ଶନିକ ଦିଦେରୋ ଗୋଟିଏ ଜ୍ଞାନକୋଷ ରଚନା କରି ସମଗ୍ର ଫରାସୀଦେଶର ଲୋକମାନଙ୍କୁ ଏପରି ଭାବରେ ତିଆରି କରିପାରିଥିଲେ ଯେ, ସେ ଦେଶରେ ଫରାସୀ ବିପ୍ଳବ-ପଥ ସହଜ ହୋଇ ଯାଇଥିଲା । ରୁଷିଆରେ କମ୍ୟୁନିଷ୍ଟ ସରକାର ପ୍ରତିଷ୍ଠିତ ହେବା ପରେ, ଦେଶର ଜନସାଧାରଣଙ୍କ ମନକୁ କୁସଂସ୍କାର

ମୁକ୍ତ କରିବା ଲାଗି ଗୋଟିଏ ନୂଆ ଜ୍ଞାନକୋଷ ପ୍ରଣୀତ ହୋଇ ଦେଶ ସାରା ପ୍ରଚାରିତ ହୋଇଥିଲା । ଜ୍ଞାନକୋଷ କଣ, ପୃଥିବୀର ସଭ୍ୟଦେଶ-ମାନଙ୍କରେ ଏହାର କପରି ଆଦର ତାର ବିସ୍ତୃତ ଆଲୋଚନା କଲେ, ସମାଜଗଠନରେ ଓ ଜାତୀୟ ବିକାଶରେ ଜ୍ଞାନକୋଷ କି ଭାବରେ ସାହାଯ୍ୟ କରିପାରେ, ତାହା ସହଜରେ ଧାରଣା କରିହେବ ।

## ସଂଜ୍ଞା ଓ ପରିସର

ଜ୍ଞାନ ବିଜ୍ଞାନ କ୍ଷେତ୍ରରେ ପାଶ୍ଚାତ୍ୟ ଦେଶମାନେ ଅଗ୍ରଣୀ । ଏସବୁ ଦେଶରେ ନାନା ଧରଣର ଜ୍ଞାନକୋଷ ସଙ୍କଳିତ ହୋଇଛି । ସେମାନେ ଏନ୍‌ସାଇକ୍ଲୋପିଡ଼ିଆ ( Encyclopaedia) କହନ୍ତି ଯେଉଁ ଅର୍ଥରେ ବ୍ୟବହାର କରିଥାନ୍ତି, ଆମ ଦେଶର ସେଇ ଅର୍ଥରେ 'ଜ୍ଞାନକୋଷ' ବା "ବିଶ୍ୱଜ୍ଞାନକୋଷ" ଶବ୍ଦ ଚଳାଇବାର ଯତ୍ନ ହେଉଛି । ବଙ୍ଗଳାରେ "ବିଶ୍ୱକୋଷ" ଏଇ ଅର୍ଥରେ ପ୍ରଯୁକ୍ତ ହୋଇଛି । ଏବେ ରାଷ୍ଟ୍ରଭାଷା ହିନ୍ଦୀରେ 'ଆକରଗ୍ରନ୍ଥ' ବୋଲି କେହି କେହି ଅନୁବାଦ କରୁଛନ୍ତି । ଏନ୍‌ସାଇକ୍ଲୋପିଡ଼ିଆର ଠିକ ଅନୁବାଦ ନେଇ ତୁମୁଳ ତର୍କ ହୋଇଥିଲା । ଏହା ମୀମାଂସା କରିବାକୁ ଏକ ସ୍ୱତନ୍ତ୍ର କମିଟି ନିଯୁକ୍ତ ହୋଇଥିଲା । ଏବେ ସ୍ଥିର ହୋଇଛି—ଇନ୍‌ସାଇ-କ୍ଲୋପିଡ଼ିୟମ୍—ନିକଟବର୍ତ୍ତୀ ଓଡ଼ିଆ ହେବ—'ସର୍ବକଳା ସଂଗ୍ରହ' । ଅଥଚ ମୂଳ ଗ୍ରୀକ୍ ଶବ୍ଦଟିର ଅକ୍ଷରିକ ଅନୁବାଦ ହେବ 'ଜ୍ଞାନମଣ୍ଡଳ' । କଥାଟି ଅର୍ଥପୂର୍ଣ୍ଣ । ଉପନିଷଦ ଦିନରୁ ମାନବଜ୍ଞାନର ଅଧୁନାତମ ବିକାଶକୁ ଏକ ବୃତ୍ତ ବା ମଣ୍ଡଳରେ କଳ୍ପନା କରାହୋଇଛି ।

ସମସ୍ତ ଜ୍ଞାନଧାରାର ସଂକ୍ଷିପ୍ତସାର ଜ୍ଞାନକୋଷ ଏକ ସୀମିତ ପରିସର ମଧ୍ୟରେ ପରିବେଷଣ କରେ । ଜ୍ଞାନକୋଷ ପ୍ରଧାନତଃ ଦୁଇ ଭାଗରେ ବିଭକ୍ତ—ସାଧାରଣ ଜ୍ଞାନକୋଷ ଓ ପ୍ରକୀର୍ଣ୍ଣ ଜ୍ଞାନକୋଷ ବା ଏକ ବିଷୟକ ଜ୍ଞାନକୋଷ । ସାଧାରଣ ଜ୍ଞାନକୋଷରେ ସବୁ ବିଷୟର ସାରସଂଗ୍ରହ ଥାଏ । ପ୍ରକୀର୍ଣ୍ଣ ଜ୍ଞାନକୋଷରେ ଗୋଟିଏ ବିଷୟ ବା ପରସ୍ପର ସଂପୃକ୍ତ ଏକାଧିକ ବିଷୟରେ ସାରସଂଗ୍ରହ ସଙ୍କଳିତ ହୋଇଥାଏ ।

# ପ୍ରାଚୀନ ଇତିହାସ ଓ ଆଧୁନିକ ବିକାଶ

ପାଶ୍ଚାତ୍ୟ ଦେଶରେ ଜ୍ଞାନକୋଷ ରଚନାର ଇତିହାସ ବିଶଦ ଭାବରେ ଆଲୋଚିତ ହୋଇଛି । ପ୍ରଥମେ ପ୍ଲେଟୋ ଓ ଆରିଷ୍ଟୋଟଲ ଆଦି ପ୍ରାଚୀନ ଗ୍ରୀକ୍ ଲେଖକଙ୍କ ରଚନାରେ ସେକାଳର ଜ୍ଞାନ ଭଣ୍ଡାର ଏକାଠି ସଞ୍ଚୟନର ଉଦ୍ୟମ ହୋଇଥିଲା । କିନ୍ତୁ ଖ୍ରୀଷ୍ଟ ପ୍ରଥମ ଶତକରେ ରଚିତ ପ୍ଲିନିଙ୍କ 'ପ୍ରାକୃତିକ ଇତିହାସ'—ଯଥାର୍ଥରେ ପ୍ରଥମ ଜ୍ଞାନକୋଷ । ଇଂଲଣ୍ଡରେ ୧୦୮୧ ଖ୍ରୀ: ଅ:ରେ ଉଇଲିୟମ କାକ୍ସଟନ 'ବିଶ୍ୱବିମ୍ବ' ( Mirrow of the world ) ନାମରେ ଏକ ଜ୍ଞାନକୋଷ ସଙ୍କଳନ କରିଥିଲେ । ଏହାର ଷାଠିଏ ବର୍ଷପରେ ସୁଇଜରଲ୍ୟାଣ୍ଡରୁ ଏକ ଝିଇକୋଟିର ଜ୍ଞାନକୋଷ ସଙ୍କଳିତ ହୋଇଥିଲା ।

ପ୍ରାଚୀନ ଓ ମଧ୍ୟଯୁଗରେ ଜ୍ଞାନକୋଷ ସଙ୍କଳନ ସହଜ ଥିଲା । କାରଣ, ପୃଥିବୀ ଓ ବିଶ୍ୱବ୍ରହ୍ମାଣ୍ଡ ବିଷୟରେ ମନୁଷ୍ୟର ଜ୍ଞାନ ଥିଲା ଅତି ଅଳ୍ପ । ସେତେବେଳେ ଜଣେ ପଣ୍ଡିତ ବ୍ୟକ୍ତି ଇଚ୍ଛା କଲେ ଗୋଟିଏ ପ୍ରାମାଣିକ ଜ୍ଞାନକୋଷ ସଂକଳନ କରି ପାରୁଥିଲେ । ଆଜି ମନୁଷ୍ୟର ଜ୍ଞାନ ପରିଧି ଅତି ବିସ୍ତୃତ । ବିଶ୍ୱମାନବର ଜ୍ଞାନ ପ୍ରବାହ ବହୁ ବିଚିତ୍ର ଓ ବିଭିନ୍ନ ଧାରାରେ ପ୍ରବାହିତ । ଅସାଧାରଣ ପ୍ରତିଭାଶାଳୀ ବ୍ୟକ୍ତିଙ୍କ ପକ୍ଷରେ ବି ଏହାର ସମସ୍ତ ଦିଗକୁ ଆୟତ୍ତ କରିବା ଦୂରରେ ଥାଉ ସ୍ପର୍ଶ କରିବା ଅସମ୍ଭବ । ସେଥିଲାଗି ଆଧୁନିକ ଜ୍ଞାନକୋଷ ବହୁ ପଣ୍ଡିତଙ୍କ ସମବେତ ପ୍ରଚେଷ୍ଟାର ଫଳ ।

ଆଜି ଆମର ଜ୍ଞାନ ଭଣ୍ଡାର ଖାଲି ବଢ଼ିନାହିଁ, ସାଧାରଣଙ୍କ ଜ୍ଞାନ ପିପାସା ମଧ୍ୟ ବଢ଼ିଛି । ସେଥିଲାଗି ଜ୍ଞାନକୋଷର ଅଭିମୁଖ୍ୟ ବଦଳିଛି । ଗତ ଶତକରେ ଜ୍ଞାନକୋଷମାନ ବିଶେଷଜ୍ଞ ପଣ୍ଡିତଙ୍କ ଲାଗି ସଙ୍କଳିତ ହେଉଥିଲା । ସମସ୍ତଙ୍କ ପକ୍ଷରେ ସହଜ ପ୍ରବେଶ୍ୟ ନଥିଲା । ଏବେ ଏପରି ଜ୍ଞାନକୋଷର ଅସାରତା ପ୍ରମାଣିତ ହୋଇଛି । ବିଶେଷଜ୍ଞଙ୍କ ଲାଗି ଗୋଟିଏ ଗୋଟିଏ ବିଷୟରେ ସ୍ୱତନ୍ତ୍ର ଜ୍ଞାନକୋଷ ସଙ୍କଳିତ ହେଉଛି । ସାଧାରଣ ଜ୍ଞାନକୋଷ ଯେପରି ସାର୍ବଜନୀନ ଉପଯୋଗରେ

ଆସିବ—ସାଧାରଣ ପାଠକଙ୍କ ପଠନରୁଚିର ଅନୁକୂଳ ହେବ ଓ ଜ୍ଞାନ-ପିପାସା ଚରିତାର୍ଥ କରିବ—ସେହି ଲକ୍ଷ୍ୟରେ ସଙ୍କଳିତ ହେଉଛି ।

ଜଗତ ବଦଳୁଛି । ଜାଗତିକ ଜ୍ଞାନଧାରା ମୁହୂର୍ତ୍ତେ ସ୍ଥିର ରହୁନାହିଁ । ଆଜି ଯେଉଁ ତଥ୍ୟ ନୂଆ, କାଲି ସେ ପୁରୁଣା ହୋଇଯାଉଛି । ଜ୍ଞାନବିଜ୍ଞାନର ଏଇ କ୍ଷିପ୍ର ଗତି ଜ୍ଞାନକୋଷ ପକ୍ଷରେ ଏକ ସମସ୍ୟା । ସେଥିରେ ନିତ୍ୟ ନୂତନ ପରିବର୍ତ୍ତନ ଲୋଡ଼ା ହେଉଛି । ନୋହିଲେ, ଅର୍ବାଚୀନ ତଥ୍ୟସବୁ ସମାବିଷ୍ଟ ହୋଇପାରୁନାହିଁ । କୌଣସି ଜ୍ଞାନକୋଷରେ ଯଦି ଅର୍ବାଚୀନ ତଥ୍ୟରାଜିର ସମାବେଶ ନ ହୁଏ—ତେବେ ନୂତନ ଗ୍ରାହକଙ୍କଠାରେ ତାର କୌଣସି ମୂଲ୍ୟ ରହେନାହିଁ । ସେଥିରେ ବିନିଯୁକ୍ତ ଶ୍ରମ ଓ ଅର୍ଥ ବ୍ୟର୍ଥ ହୋଇଯାଏ । ଏହି ଅସୁବିଧା ଦୂର କରିବାକୁ ଗତ ଅର୍ଦ୍ଧଶତାବ୍ଦୀ ମଧ୍ୟରେ ନାନା ପ୍ରକାର ଉପାୟ ଅବଲମ୍ବିତ ହୋଇଛି । ଫଳରେ ବିଶିଷ୍ଟ ଜ୍ଞାନକୋଷ ଗୁଡ଼ିକୁ ଆଧୁନିକତମ ଜ୍ଞାନଧାରାରେ ସମୃଦ୍ଧ କରିଯାଇ ପାରୁଛି ।

## ଜ୍ଞାନକୋଷ-ନବୀକରଣର ଉପାୟ

ଅଧିକାଂଶ ବିଶ୍ୱବିଖ୍ୟାତ ଜ୍ଞାନକୋଷ କ୍ରମାଗତ ଭାବରେ ପରିପୂରକ ଖଣ୍ଡମାନ ପ୍ରକାଶ କରିଥାନ୍ତି । ଏହାଦ୍ୱାରା ସହଜରେ ନବ ପରିଜ୍ଞାତ ତଥ୍ୟରାଜି ଆହରଣ କରି ହୋଇଥାଏ । ଏହା ଅଳ୍ପ ବ୍ୟୟସାଧ୍ୟ । ବୃହଦ୍‌କାୟ ଜ୍ଞାନକୋଷଗୁଡ଼ିକର ସଙ୍କଳନ ଓ ପ୍ରକାଶରେ ଦୀର୍ଘକାଳ ଲାଗେ । ଏହି ସମୟରେ ପୃଥିବୀର ପରିବର୍ତ୍ତିତ ଅବସ୍ଥା ଉପରେ ଆଲୋକପାତ କରିବାକୁ ପରିପୂରକ ଖଣ୍ଡମାନ ଆବଶ୍ୟକ ହୋଇଥାଏ । ଯେମିତି ଜାପାନୀ ଜ୍ଞାନକୋଷ । ୧୯୪୫ରେ ଏହାର ପ୍ରଥମ ସଙ୍କଳନ ପ୍ରକାଶ ପାଇବାକୁ ୨୫ ବର୍ଷ ଲାଗିଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧର ଠିକ୍ ପରବର୍ତ୍ତୀ ଓ ସମକାଳୀନ ଘଟଣା ପଥରେ ସ୍ଥାନ ପାଇ ପାରି ନ ଥିଲା । ସେଥିଲାଗି ୧୯୦[illegible]ରେ ପୁଣି ଏହାର ତିନୋଟି ପରିପୂରକ ଖଣ୍ଡ ପ୍ରକାଶ କରାଯାଇ ଥିଲା । କେତେକ ସ୍ଥଳରେ ପରିପୂରକ ଖଣ୍ଡ ପ୍ରକାଶକୁ ଜ୍ଞାନ-କୋଷ ନବୀକରଣର ଏକମାତ୍ର ଉପାୟରୂପେ ଅବଲମ୍ବନ କରାଯାଇଛି । ଏହାର ଦୃଷ୍ଟାନ୍ତ ବ୍ରିଟିଶ ଜ୍ଞାନକୋଷ । ବ୍ୟୟସାଧ୍ୟ ହେବାରୁ

୧୯୩୩ରୁ ଏହାର ନୂତନ ସଂସ୍କରଣ ପ୍ରକାଶ ବନ୍ଦ କରି ଦିଆ ହୋଇଛି । ତତ୍ପରିବର୍ତ୍ତେ ବାର୍ଷିକ ପରିପୂରକ ଖଣ୍ଡମାନ ପ୍ରକାଶିତ ହେଉଛି ।

ଆମେରିକା ଭଳି କେତେକ ଦେଶରେ ଜ୍ଞାନକୋଷଗୁଡ଼ିକ ଥରେ ପ୍ରକାଶିତ ହେବା ପରେ ଶୀଘ୍ର ତାର ପୁନର୍ମୁଦ୍ରଣ ଆବଶ୍ୟକ ହୋଇଥାଏ । ଏଠାରେ ଯାନ୍ତ୍ରିକ ପ୍ରକ୍ରିୟାରେ ପ୍ରତ୍ୟେକ ନୂତନ ମୁଦ୍ରଣରେ ଆବଶ୍ୟକୀୟ ସଂଶୋଧନ ଓ ପରିବର୍ଦ୍ଧନ କରାଯାଇଥାଏ । ଯେଉଁ ପ୍ଲେଟ୍‌ରୁ ଜ୍ଞାନକୋଷ ମୁଦ୍ରିତ ହୁଏ, ସେଗୁଡ଼ିକ ସୁରକ୍ଷିତ ହୋଇଥାଏ । ସେଥିରୁ ଅନାବଶ୍ୟକ ଅଂଶ ବାଦ ଦେଇ ନୂତନ ବିଷୟମାନ 'କମ୍ପୋଜ' କରି ଦିଆଯାଏ । ଜ୍ଞାନକୋଷଗୁଡ଼ିକ ନିତ୍ୟନୂତନ କରି ରଖିବା ଲାଗି ଏହା ବେଶ ଚମତ୍କାର ବ୍ୟବସ୍ଥା । କିନ୍ତୁ ସବୁକ୍ଷେତ୍ରରେ ଏହାର ପ୍ରୟୋଗ ସମ୍ଭବ ନୁହେଁ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଫରାସୀ ଦେଶରେ ଏକ ନୂତନ ଉପାୟ ଅବଲମ୍ବିତ ହୋଇଛି । ୧୯୪୮ରେ ପ୍ରକାଶିତ ବିପୁଳକାୟ ଫରାସୀ ଜ୍ଞାନ-କୋଷକୁ ଲୁଜ୍ ଲିଭସ୍ ବା ଅବନ୍ଧା ଆକାରରେ ରଖାଯାଇଛି । ଯେଉଁ ପ୍ରବନ୍ଧର ବିଶେଷ ପରିମାର୍ଜନ, ପରିବର୍ତ୍ତନ ବା ପରିବର୍ଦ୍ଧନ ଆବଶ୍ୟକ ହେଉଛି, ସେଗୁଡ଼ିକର ପୁନର୍ମୁଦ୍ରଣ କରାଯାଏ । ଏହି ପୁନର୍ମୁଦ୍ରିତ ପୃଷ୍ଠାଗୁଡ଼ିକ ସ୍ଥାୟୀ ଗ୍ରାହକଙ୍କୁ ବିତରଣ କରାଯାଏ ଓ ଗଚ୍ଛିତ ସେଟମାନଙ୍କରେ ମଧ୍ୟ ଖଞ୍ଜି ଦିଆଯାଏ । ଯେଉଁଠି ପୁରୁଣା ଜ୍ଞାନକୋଷ ବାରମ୍ବାର ମୁଦ୍ରିତ ହେବା ସମ୍ଭବ ନୁହେ, ସେଠାରେ ଏ ବ୍ୟବସ୍ଥା ଆଦର୍ଶ ସ୍ଥାନୀୟ । ପ୍ରକାଶକ ଓ ଗ୍ରାହକ, ଉଭୟଙ୍କ ପକ୍ଷରେ ଅଳ୍ପ ବ୍ୟୟସାଧ୍ୟ । ଆମେରିକାରେ ଏବେ କେତେକ ଜ୍ଞାନକୋଷ ଏ ବ୍ୟବସ୍ଥା ଗ୍ରହଣ କରିଛନ୍ତି । କିନ୍ତୁ ସେଠାରେ ଏହା ଲୋକପ୍ରିୟ ହୋଇନାହିଁ । ଧନକୁବେର ଆମେରିକାର ପାଠକ ଓ ଗ୍ରନ୍ଥାଗାରିକ-ମାନେ ପୁରୁଣା ଜ୍ଞାନକୋଷରେ ନୂଆ ପୃଷ୍ଠା ଯୋଡ଼ି କାମ ଚଳେଇ ନେବାକୁ ଆଦୌ ପ୍ରସ୍ତୁତ ନୁହନ୍ତି । ପ୍ରତିବର୍ଷ ସେଠାରେ ନୂଆ ଧରଣର ଜ୍ଞାନକୋଷ ପ୍ରକାଶିତ ହେଉଛି, ପୁରୁଣା ଜ୍ଞାନକୋଷଗୁଡ଼ିକର ନୂତନ ସଂସ୍କରଣ ପ୍ରକାଶ ପାଉଛି । ସେମାନେ ପୁରୁଣା ଜ୍ଞାନକୋଷକୁ ଆଦର କରିବେ କାହିଁକି ? ଏହା ବ୍ୟତୀତ ଫ୍ରାନ୍ସ ଓ ଆମେରିକାରେ

ଜ୍ଞାନକୋଷ ସଙ୍କଳନରେ ମଧ୍ୟ ସୁସ୍ପଷ୍ଟ ପାର୍ଥକ୍ୟ ଦେଖାଯାଏ । ଆମେରିକାରେ ଜ୍ଞାନକୋଷଗୁଡ଼ିକ ଯାନ୍ତ୍ରିକ ଉପାୟରେ ବହୁ ସଂଖ୍ୟକ ସ୍ଥାୟୀ ପତ୍ରକାର୍‌ ସଂପାଦକଙ୍କ ଦ୍ୱାରା ଅନେକ କାଳର ସମ୍ବାଦପତ୍ର ଭଳି ସଙ୍କଳିତ ହୁଏ । ସାମ୍ବାଦିକ ଶୈଳୀରେ ସହଜରେ ପାଠକଙ୍କ ଦୃଷ୍ଟି ଆକର୍ଷଣ କରି ପାରିବା ଭଳି ତଥ୍ୟ ପରିବେଷଣ କରା ଯାଇଥାଏ । ସ୍ଥାୟୀ ମୂଲ୍ୟରେ ଗୃହୀତ ହେବାଭଳି ଲେଖାଗୁଡ଼ିକରେ କୌଣସି ସାହିତ୍ୟିକ ଉପାଦାନ ନ ଥାଏ । ଫରାସୀ ଜ୍ଞାନକୋଷର ପ୍ରବନ୍ଧ-ମାନ ଦେଶର ସର୍ବଶ୍ରେଷ୍ଠ ଲେଖକମାନଙ୍କର ଲିଖନ-ପାଟବ ଦେଇ ଆତ୍ମ ପ୍ରକାଶ କରେ । ସେଥିଲାଗି ସେ ଗୁଡ଼ିକ ଶୀଘ୍ର ପୁରୁଣା ହୋଇଯାଏ ନାହିଁ, ସାହିତ୍ୟ ମୂଲ୍ୟ ଲାଗି ପାଠକ ଆଦର କରନ୍ତି ।

## ସଂକଳନ ପ୍ରଣାଳୀ ଓ ସଂପାଦନା

ଜ୍ଞାନକୋଷର ସାର୍ଥକତା ଦୁଇଟି ବିଷୟ ଉପରେ ନିର୍ଭର କରେ । ପ୍ରଥମତଃ ତଥ୍ୟଗତ ପୂର୍ଣ୍ଣତା, ଦ୍ୱିତୀୟରେ ବ୍ୟାବହାରିକ ସୁବିଧା । ଏଥିପ୍ରତି ସଂପାଦନା ସଂସ୍ଥା ବିଶେଷ ଦୃଷ୍ଟି ଦେଇଥାନ୍ତି । ବ୍ୟାବହାରିକ ସୁବିଧା ଲାଗି ପ୍ରତ୍ୟେକ ଜ୍ଞାନକୋଷରେ ଅଭିଧାନ ସଙ୍କଳନର ପ୍ରଯୁକ୍ତ କେତେକ ଉପାୟ ଅବଲମ୍ବିତ ହୋଇଥାଏ । ପ୍ରବନ୍ଧମାନ ଅକ୍ଷର-କ୍ରମରେ ସଜା ହୋଇଥାଏ । ପ୍ରତି ପୃଷ୍ଠା ଶୀର୍ଷକରେ ନିର୍ଦ୍ଦେଶକ ଶବ୍ଦମାନ ଦିଆ ହୁଏ । ଏହା ବ୍ୟତୀତ ଅଧିକ ତଥ୍ୟ ଅନ୍ୱେଷଣରେ ପାଠକଙ୍କୁ ସାହାଯ୍ୟ କରିବା ଲାଗି, ପ୍ରତ୍ୟେକ ପ୍ରବନ୍ଧ ଶେଷରେ ସହାୟକ ଗ୍ରନ୍ଥ ସୂଚୀ ଓ ଆବଶ୍ୟକ ସ୍ଥଳରେ ପୃଷ୍ଠାନ୍ତର ବା ପ୍ରସଙ୍ଗାନ୍ତରର ଅନୁରୂପ ବିଷୟରେ ସୂଚନା (Cross references) ଦିଆ ହୋଇଥାଏ । ବିଷୟର ଦ୍ରୁତ ଅବବୋଧ ପାଇଁ ସହଜରେ ଆଖିରେ ପଡ଼ିଲା ଭଳି ବଡ଼ ବଡ଼ ଅକ୍ଷରରେ ଉପଶୀର୍ଷକମାନ ଓ ସେଥି ସହିତ ରେଖାଚିତ୍ର, ଛବି, ମାନଚିତ୍ର ଆଦି ସଂଯୁକ୍ତ ହୋଇଥାଏ । ଏହା ବ୍ୟତୀତ ବଡ଼ ବଡ଼ ଜ୍ଞାନକୋଷରେ ବିଷୟ ନିର୍ଦ୍ଦେଶିକା ଓ ଅଧ୍ୟୟନ ସୂଚନା ସମ୍ବଳିତ ସ୍ୱତନ୍ତ୍ର ଖଣ୍ଡମାନ ପ୍ରକାଶିତ ହୁଏ । ଏଥିରେ ଅନେକ ସମୟରେ ପ୍ରବନ୍ଧ-ଗୁଡ଼ିକର ବିଶେଷ ଅଭିମୁଖ୍ୟ ଓ ଉପଯୋଗିତା ବିଷୟରେ ସୂଚନା ଦିଆ ଯାଇଥାଏ ।

ଜ୍ଞାନକୋଷର ଅଭିମୁଖ୍ୟ ନିର୍ଣ୍ଣୟ ପ୍ରଥମ କାର୍ଯ୍ୟ । ବିଶେଷଜ୍ଞ ପଣ୍ଡିତ ଓ ଦେଶର ସାଂସ୍କୃତିକ ଜୀବନର ପ୍ରତିନିଧି ସ୍ଥାନୀୟ ବ୍ୟକ୍ତିଙ୍କ ପରାମର୍ଶରେ ସମ୍ପାଦକମଣ୍ଡଳୀ ଏ ଅଭିମୁଖ୍ୟ ନିର୍ଣ୍ଣୟ କରି ଥାଆନ୍ତି । କେଉଁ ବିଷୟ ପ୍ରତି କି ପରିମାଣରେ ଗୁରୁତ୍ୱ ଦେବାକୁ ହେବ, ସ୍ଥାନୀୟ ସମସ୍ୟା ପ୍ରତି ଲେଖକଙ୍କର ଦୃଷ୍ଟିକୋଣ କଣ ହେବ, ପ୍ରବନ୍ଧଗୁଡ଼ିକର ଲିଖନ-କ୍ରମରେ କିପରି ଐକ୍ୟ ରହିବ—ଏହିସବୁ କଥା ପ୍ରଥମେ ସ୍ଥିର ହୋଇଥାଏ । ବିଶିଷ୍ଟ ଜ୍ଞାନକୋଷରେ ପ୍ରବନ୍ଧଗୁଡ଼ିକର ବିଷୟଗତ ସଂଜ୍ଞା ଓ ପରିସର, ଐତିହାସିକ ବିକାଶ-କ୍ରମ, ତୁଳନାତ୍ମକ ବିବରଣୀ ଆଦି ଏକ ନିର୍ଦ୍ଦିଷ୍ଟ କ୍ରମରେ ଲେଖା ହୋଇଥାଏ । ଫଳରେ ଏହା ବିଭିନ୍ନ ଲେଖକଙ୍କ ଲିଖିତ ବିଚ୍ଛିନ୍ନ ରଚନାର ସଂଗ୍ରହ ମାତ୍ର ନ ହୋଇ, ଏକ ସୁପରିକଳ୍ପିତ ଧାରାରେ ଗ୍ରଥିତ ହୁଏ ।

## ବିଶ୍ୱଜ୍ଞାନକୋଷର ଆଦର୍ଶ

ବିଶ୍ୱଜ୍ଞାନକୋଷ ବିଶ୍ୱମାନସ-ଲୋକର ମୁକୁର । ଏହାର ବିଚାର-ଧାରା ସ୍ୱାଧୀନ ଓ ନିରପେକ୍ଷ ହେବ । ଏହାର ତଥ୍ୟଗୁଡ଼ିକ କୌଣସି ଜାତି ବା ମତବାଦର ସ୍ୱାର୍ଥରେ ବିକୃତ ହେବ ନାହିଁ—ଏହା ଆଜିର ଆଦର୍ଶ । କିନ୍ତୁ ଆଧୁନିକ ଦୁନିଆରେ ଜାତୀୟ ସ୍ୱାର୍ଥ ସଂଘର୍ଷ ଓ ବିରୋଧମାନ ଭାବ-ସଂଘାତହିଁ ପ୍ରବଳ । ଏଥିରେ ଏ ଆଦର୍ଶ ରକ୍ଷାକରିବା ବଡ଼ କଠିନ । ସାର୍ବଜନୀନତା ଓ ସତ୍ୟାନୁବର୍ତ୍ତିତା ସବୁବେଳେ ସବୁ ଜ୍ଞାନକୋଷର ଲକ୍ଷ୍ୟ ରୂପେ ଘୋଷିତ ହୋଇଛି । କିନ୍ତୁ ଏ ଲକ୍ଷ୍ୟ ଯଥାର୍ଥରେ କ୍ୱଚିତ ପାଳିତ ହେଉଛି ।

ସତ୍ୟ ପ୍ରତି ଅବିଚଳିତ ନିଷ୍ଠାର ଆଦର୍ଶ ଆଧୁନିକ ଜ୍ଞାନକୋଷର ପିତା ଫରାସୀ ଦାର୍ଶନିକ ଦ'ଦେରୋ ସର୍ବ ପ୍ରଥମେ ଦେଖାଇ ଯାଇଛନ୍ତି । ଫରାସୀ ଦେଶର ତତ୍କାଳୀନ ସାମନ୍ତ-ଶାସନର ବିରୋଧ ଓ ନିର୍ଯ୍ୟାତନା ପ୍ରତି ଭ୍ରୂକ୍ଷେପ ନ କରି ସେ ଶାସନର ଅସାରତା, ମିଥ୍ୟା, ପ୍ରବଞ୍ଚନା ଓ ଦୁର୍ବଳତାର ଯଥାର୍ଥ ଚିତ୍ର ନିଜ ଜ୍ଞାନକୋଷରେ ଦେଇ-ଥିଲେ । ଏହା ମୂଳରେ ଥିଲା ବିଶ୍ୱଜନୀନ ମଙ୍ଗଳ ସାଧନର ମହାନ୍

ଉଦ୍ଦେଶ୍ୟ । ବିଭିନ୍ନ ଧାରାରେ ପ୍ରବାହିତ ବିଶ୍ୱମାନବିକ ଜ୍ଞାନଧାରାକୁ ଏକତ୍ର କରି, ସମକାଳୀନ ସମାଜରେ ପ୍ରବାହିତ କରେଇବା ଓ ଭବିଷ୍ୟତ ବଂଶଧରଙ୍କ ଲାଗି ଏହି ଜ୍ଞାନ ମନ୍ଦାକିନୀର ଧାରା ଅବ୍ୟାହତ ରଖିବାର ପ୍ରୟାସ ସେ କରିଥିଲେ । ଭବିଷ୍ୟତ ବଂଶଧର ଯେପରି ଅଧିକ ଜାଣିବେ ଓ ଜାଣି ସୁଖୀ ହେବେ, ସେଇ ଚିନ୍ତା ତାଙ୍କୁ ଘାରିଥିଲା । ମନୁଷ୍ୟକୁ ଚିରଜାଗ୍ରତ ରଖିବା, ତାଙ୍କର ଘୋଷିତ ଲକ୍ଷ୍ୟ ଥିଲା । ଏହାହିଁ ଜ୍ଞାନକୋଷର ଚିରନ୍ତନ ଆଦର୍ଶ ।

ଏଇଚ, ଜି, ଓ୍ୱେଲସ୍ ବିଶ୍ୱଜ୍ଞାନକୋଷର ଆଦର୍ଶ ବ୍ୟାଖ୍ୟା କରି ଆଜକୁ କୋଡ଼ିଏ ବର୍ଷ ପୂର୍ବେ ଲେଖିଥିଲେ, "ବିଶ୍ୱଜ୍ଞାନକୋଷର ଗ୍ରନ୍ଥମାଳା ସୁବୋଧ୍ୟ ଭାଷାରେ ଲିଖିତ ଓ ଆଧୁନିକତମ ତଥ୍ୟରାଜିରେ ସମୃଦ୍ଧ ହେବ । ଆମ ସମାଜର ମୁଖ୍ୟ ଭାବଧାରା, ଜ୍ଞାନବିଜ୍ଞାନର ସମସ୍ତ ଶାଖାର ସାଧାରଣ ପରିଚୟ ଓ ପ୍ରଧାନ ତଥ୍ୟାବଳୀ, ବିଶ୍ୱଜଗତର ଯଥା-ସମ୍ଭବ ବିସ୍ତୃତ ଓ ସତ୍ୟମୂଳକ ଚିତ୍ର, ପୃଥିବୀର ଏକ ସଂକ୍ଷିପ୍ତ ଧାରାବାହିକ ଇତିହାସ ଓ ସମସ୍ତ ଜ୍ଞାନ ଭଣ୍ଡାରର ମୂଳସ୍ରୋତ ବିଷୟରେ ସମ୍ପୂର୍ଣ୍ଣ ଓ ବିଶ୍ୱସ୍ତ ସୂଚନା ଏଥିରୁ ଖୋଜି ପାଇବା ଲାଗି କୌଣସି ଅସୁବିଧାରେ ପଡ଼ିବାକୁ ହେବ ନାହିଁ; କିମ୍ବା ବିଶେଷ ଶ୍ରମ ସ୍ୱୀକାର କରିବାକୁ ପଡ଼ିବ ନାହିଁ । ଯେଉଁସବୁ କ୍ଷେତ୍ରରେ ବିଭିନ୍ନ କାର୍ଯ୍ୟଧାରା ବା ମତବାଦ ପ୍ରଚଳିତ, ସେ କ୍ଷେତ୍ରରେ ଗୋଟିଏ ଅଧେ ମତବାଦର ସାରାଂଶ ନୁହେଁ, ସୁନିର୍ବାଚିତ ଓ ସୁସମ୍ବଦ୍ଧ ବିବରଣୀ ଓ ପ୍ରତିପାଦକ ଯୁକ୍ତିସବୁ ସହଜରେ ଆମେ ଏଥିରୁ ପାଇପାରିବା ।

"ଏ ବିଶ୍ୱଜ୍ଞାନକୋଷ ହେବ ପୃଥିବୀର ପ୍ରତ୍ୟେକ ବୁଦ୍ଧିମାନ ବ୍ୟକ୍ତିର ମାନସିକ ଭିତ୍ତି । ଏହା ଜୀବନ୍ତ, ପ୍ରତିନିୟତ ପରିବର୍ଦ୍ଧିତ ଓ ପରିବର୍ତ୍ତିତ ହେଉଥିବ । ପୃଥିବୀର ସମସ୍ତ ମୌଳିକ ଭାବୁକଙ୍କ ଦ୍ୱାରା ଏହା ବାରମ୍ବାର ସଂଶୋଧିତ ହେଉଥିବ । ଆବଶ୍ୟକ ଅଂଶ ନୂତନ ଭାବରେ ଗ୍ରଥିତ ହେବା ସଙ୍ଗେ ସଙ୍ଗେ ଏଥିରୁ ଅନାବଶ୍ୟକ ଅଂଶତକ ବାଦ୍ ଦିଆଯାଉଥିବ । ଏହାର ସ୍ଥାୟୀ ସମ୍ପାଦକୀୟ ଅନୁଷ୍ଠାନ ପୃଥିବୀର ସମସ୍ତ ବିଶ୍ୱବିଦ୍ୟାଳୟ ଓ ଗବେଷଣା ମନ୍ଦିର ସହିତ ସମ୍ପର୍କ ରଖୁଥିବେ । ସମସ୍ତ ତଥ୍ୟର ଯଥାର୍ଥତା ଓ ସତ୍ୟତା ନିରୂପଣରେ ଏହା ହେବ ଏକମାତ୍ର

କଷଟି । ସ୍କୁଲ କଲେଜର ପାଠ୍ୟପୁସ୍ତକ ଲାଗି ଏହା ହେବ ମୌଳିକ ଉପାଦାନର ପ୍ରାମାଣିକ ଗ୍ରନ୍ଥ ।

"ଏଭଳି ଏକ ଜ୍ଞାନକୋଷ ହେବ ବିଶ୍ୱସଂସ୍କୃତିର ବାଇବେଲ୍ । ଏହା ସବୁପ୍ରକାର ଅନ୍ଧବିଶ୍ୱାସରୁ ମୁକ୍ତ ହେବ । ଖଣ୍ଡିତ ପ୍ରଚେଷ୍ଟା ଓ ବିକ୍ଷିପ୍ତ ବୌଦ୍ଧିକ ସାଧନ ଦ୍ୱାରା ଆଜି ଯାହା ହୋଇ ପାରୁନାହିଁ, ତାହା କରିବାକୁ ଏହା ସମର୍ଥ ହେବ । ସମଗ୍ର ବିଶ୍ୱକୁ ଏହା ଗୋଟିଏ ମନରେ ବାନ୍ଧି ପାରିବ ।"



ଜ୍ଞାନକୋଷ ଯେଉଁ ଦେଶରେ ରଚିତ ହୋଇନାହିଁ—ତାହା ସଭ୍ୟତାଲୋକରୁ ବହୁ ଦୂରରେ ବୋଲିବାକୁ ହେବ । ଜ୍ଞାନକୋଷ ଦେଶର ସାଂସ୍କୃତିକ ଓ ବୈଷୟିକ ବିକାଶର ଶ୍ରେଷ୍ଠ ମାନଦଣ୍ଡ । ଯେଉଁ ଦେଶ ଯେତିକି ସଭ୍ୟ ଓ ଉନ୍ନତ, ସେ ଦେଶରେ ସେତେ ବିଭିନ୍ନ ଧରଣର ଜ୍ଞାନକୋଷ ସଙ୍କଳିତ ହୋଇଛି । ଫଳରେ, ଦେଶର ସାଧାରଣ ନାଗରିକ,କାରଖାନାର ଶ୍ରମିକଙ୍କଠାରୁ ବିଶ୍ୱବିଦ୍ୟାଳୟର ଛାତ୍ର, ଅଧ୍ୟାପକ ଓ ବିଶେଷଜ୍ଞ ପଣ୍ଡିତଙ୍କ ପର୍ଯ୍ୟନ୍ତ ସମସ୍ତେ ଦେଶ ବିଦେଶର ଜ୍ଞାନ ସମୁଦ୍ରରେ ଅବଗାହନ ସୌଭାଗ୍ୟ ଲାଭ କରୁଚନ୍ତି । ଦେଶରେ ବିଶ୍ୱ ଓ ବିଶ୍ୱରେ ସ୍ୱଦେଶର ଭୂମିକା ସେମାନେ ସହଜରେ କଳନା କରି ପାରୁଚନ୍ତି । ଏଇ ସଂପ୍ରସାରିତ ଦୃଷ୍ଟିକୋଣ ସେମାନଙ୍କୁ ନିଜ ନିଜ କାର୍ଯ୍ୟ-କ୍ଷେତ୍ରରେ ସାହାଯ୍ୟ କରୁଛି, ନୂତନ ଉଦ୍ଭାବନରେ ଶକ୍ତି ଯୋଗାଉ ଅଛି । ବିଭିନ୍ନ ଦେଶରେ ଯେତେ ପ୍ରକାର ଜ୍ଞାନକୋଷ ସଙ୍କଳିତ ହୋଇଛି, ତାର ବିବରଣୀ ଦେଲେ, ଏକ ଗ୍ରନ୍ଥ ହେବ । ଯୁଗାନ୍ତକାରୀ ମାନବ ପ୍ରତିଭା, ନିରବଚ୍ଛିନ୍ନ ସାଧନା-ଶକ୍ତି ଆଧୁନିକ ଜ୍ଞାନକୋଷକୁ ବିଶ୍ୱ-ମାନସର ମୁକୁର କରିଛି । ପୃଥିବୀର କେତୋଟି ବିଶିଷ୍ଟ ଜ୍ଞାନକୋଷ ପ୍ରତି ଦୃଷ୍ଟିପାତ କଲେ—ଏହା ଅନୁଭୂତ ହେବ ।

# ବିଭିନ୍ନ ଇଉରୋପୀୟ ଦେଶରେ ଜ୍ଞାନକୋଷ

ଆଧୁନିକ ସଭ୍ୟତା ପ୍ରଥମେ ପଶ୍ଚିମ ଇଉରୋପରେ ଜନ୍ମଲାଭ କଲା । ଏହା ମୂଳରେ ଥିଲା ନବଜାଗରଣ ଓ ଶିଳ୍ପ ବିପ୍ଳବ । ଏହି ନବଜାଗରଣ ଯୁଗରେ ମନୁଷ୍ୟର ଚିନ୍ତାଧାରା ବିପୁଳ ପ୍ରବାହରେ ଗତି କଲା, କର୍ମଶକ୍ତି ନାନା ଦିଗରେ ଧାବିତ ହେଲା । ନୂତନ ଦେଶ ଆବିଷ୍କାର, ପ୍ରାକୃ ସମ୍ପଦର ଉଦ୍ଧାର, ବୈଜ୍ଞାନିକ ଉଦ୍ଭାବନ ଓ ଯନ୍ତ୍ର ଶିଳ୍ପର ସଂଗଠନ ମାନବର ଜ୍ଞାନ ପରିଧି ବିସ୍ତୃତତର କଲା । ଏଥିରୁ ଜ୍ଞାନକୋଷ ସଙ୍କଳନ ଲାଗି ଅତି ଅନୁକୂଳ ପରିବେଶ ସୃଷ୍ଟି ହେଲା । ପ୍ରଥମେ ଇଂଲଣ୍ଡରେ ଚେମ୍ବରଙ୍କ ଚେଷ୍ଟାରେ ଏକ କ୍ଷୁଦ୍ର ଜ୍ଞାନକୋଷ ସଙ୍କଳିତ ହୋଇଥିଲା । ଅନ୍ୟ ଇଉରୋପୀୟ ଦେଶମାନରେ ଏହାର ଆଦର ହେଲା । ଫରାସୀ ଦେଶର ଜଣେ ପ୍ରକାଶକ ଦେପ କାଲନ ବିଖ୍ୟାତ ଫରାସୀ ଲେଖକ ଦ'ଦେରୋଙ୍କୁ ଏଇ ଇଂରେଜୀ ଜ୍ଞାନକୋଷଟିକୁ ଫରାସୀ ଭାଷାରେ ଅନୁବାଦ କରିଦେବାକୁ ଅନୁରୋଧ କରିଥିଲେ । ଦ'ଦେରୋ ଅନୁରୋଧ ରକ୍ଷା କଲେ । କିନ୍ତୁ ସେ ଖାଲି ଅନୁବାଦରେ ସନ୍ତୁଷ୍ଟ ହେବା ଲୋକ ନ ଥିଲେ । ସେ ନୂଆ ଭାବରେ ଫରାସୀ ଜ୍ଞାନକୋଷ ସଂକଳନ ଆରମ୍ଭ କରିଦେଲେ । ବୈଜ୍ଞାନିକ ବୁ୍ୟଫଁ, ଓ୍ୱଲ୍‌ଟେୟାର ଓ ରୁଷୋଙ୍କ ଭଳି ଲେଖକ ତାଙ୍କୁ ସାହାଯ୍ୟ କରିବାକୁ ଅଗ୍ରସର ହେଲେ । ଏକ ବୈଜ୍ଞାନିକ ଦୃଷ୍ଟି ଓ ବୈପ୍ଳବିକ ଆଦର୍ଶ ଘେନି ଏ ଜ୍ଞାନକୋଷ ଆତ୍ମ-ପ୍ରକାଶ କଲା । ଏହାପ୍ରତି ସରକାରୀ ବିରୋଧ ତୀବ୍ର ହେଲା । ସଙ୍କଳୟିତାଙ୍କୁ ନ ଜଣାଇ ଭୀରୁ ପ୍ରକାଶକ ଏହି ମହାଗ୍ରନ୍ଥକୁ ପରିବର୍ତ୍ତିନ କରିବାକୁ ଯାଇ, କେତେକାଂଶରେ ବିକଳାଙ୍ଗ କରିଦେଲେ । ଏ ସମସ୍ତ ଝଡ଼ ଝଞ୍ଜା ଭିତରେ ୧୭୫୧ ରୁ ୧୭୭୨– ଦୀର୍ଘ ଏକୋଇଶି ବର୍ଷର ସାଧନା ଫଳରେ ପୃଥିବୀର ଏଇ ପ୍ରଥମ ମହାନ୍ ଜ୍ଞାନକୋଷ ୩୫ ଖଣ୍ଡରେ ସମ୍ପୂର୍ଣ୍ଣ ହୋଇଥିଲା । ଏ-ଭ ଓ୍ୱଲ୍‌ଟେୟାର ଏହା ସମ୍ବନ୍ଧରେ ଦ'ଦେରୋଙ୍କୁ ଲେଖିଥିଲେ, "ତୁମ ଗ୍ରନ୍ଥ ବାବେଲର ସ୍ତମ୍ଭ ଭଳି ବିପୁଳ । ଏଥିରେ ଭଲ ମନ୍ଦ, ସତ ମିଛ, ଦୁଃଖ ସୁଖ,—ସବୁ ବିଷୟ ରୁଦ୍ଧ ହୋଇଛି ।" ଊନବିଂଶ ଶତକର ଇଉରୋପରେ ଏହା ବିଶେଷ ଆଦୃତ ହୋଇଥିଲା । ନୂତନ ଗଣତନ୍ତ୍ରର ଆଦର୍ଶ ପ୍ରତିଷ୍ଠା କରିଥିଲା । ଏବେ

ବି କଳା, ଦର୍ଶନ ଓ ସାହିତ୍ୟ ଆଲୋଚନା ପ୍ରସଙ୍ଗରେ ପଣ୍ଡିତମାନେ ଏହାର ମହତ୍ତ୍ୱ ସ୍ୱୀକାର କରି ଥାଆନ୍ତି ।

ଊନବିଂଶ ଶତକର ଶେଷ ଅଦ୍ଧକୁ ଫରାସୀ ଦେଶରେ ଆହୁରି କେତୋଟି ବିଶିଷ୍ଟ ଜ୍ଞାନକୋଷ ସଙ୍କଳିତ ହୋଇଥିଲା । ଏଥିମଧ୍ୟରୁ ଲରୋଉଜଙ୍କ ଅଭିଧାନ (୧୮୬୬—୧୮୯୦ ମଧ୍ୟରେ ୧୭ ଖଣ୍ଡରେ ସମ୍ପୂର୍ଣ୍ଣ) ଓ ଲ ଗ୍ରାଁନ୍ଦ୍ ଅଁସିକ୍ଲୋପେଦି (୧୮୮୬—୧୯୦୨ ମଧ୍ୟରେ ୩୦ ଖଣ୍ଡରେ ସମ୍ପୂର୍ଣ୍ଣ ) ବିଶେଷ ଉଲ୍ଲେଖଯୋଗ୍ୟ । ଏକାଧାରରେ ଅଭିଧାନ ଓ ଜ୍ଞାନକୋଷ—ଉଭୟ ଉଦ୍ଦେଶ୍ୟସାଧନ ଲକ୍ଷ୍ୟରେ ଲରୋଉଜଙ୍କ ଅଭିଧାନ ସଙ୍କଳିତ ହୋଇଥିଲା । ବିଶିଷ୍ଟ ସାହିତ୍ୟ ଗ୍ରନ୍ଥ, ପ୍ରଧାନ ପ୍ରଧାନ କ୍ଲାସିକେଲ ସଙ୍ଗୀତ ଓ ଶିଳ୍ପକୃତି ବିଷୟରେ ସ୍ୱତନ୍ତ୍ର ଆଲୋଚନା—ଏହାର ବିଶେଷତ୍ୱ । ଏହାର କେତେକ ସଂକ୍ଷିପ୍ତ ସଂସ୍କରଣ ମଧ୍ୟ ପ୍ରକାଶିତ ହୋଇଥିଲା । ସହଜ ବ୍ୟବହାର ଉପଯୋଗୀ ହୋଇଥିବାରୁ ଅନ୍ୟ ଦେଶରେ ଏହାର ଖୁବ୍ ଆଦର ହୋଇଥିଲା । ଏହାରି ଆଦର୍ଶରେ ଅନୁକରଣରେ ଜ୍ଞାନକୋଷମାନ ସଙ୍କଳିତ ହେଲା । ବିଂଶ ଶତକର ଶ୍ରେଷ୍ଠ ଫରାସୀ ଜ୍ଞାନକୋଷ "ଅଁସିକ୍ଲୋପେଦି ଫ୍ରାଁସେ"ର ସଙ୍କଳନ କାର୍ଯ୍ୟ ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବେ ଆରମ୍ଭ ହୋଇଥିଲା । ୧୯୬୮ରେ ଏହା ଏକୋଇଶି ଖଣ୍ଡରେ ପ୍ରକାଶିତ ହୋଇଛି । ଏହାକୁ ଅବନ୍ଧା ରଖା ଯାଇଛି । ପ୍ରତି ନିୟତ ଏହା ପରିବର୍ତ୍ତିତ ଓ ପରିବର୍ଦ୍ଧିତ ହେଉଛି । ଜ୍ଞାନକୋଷ ସଙ୍କଳନର ଏହା ଏକ ଜୀବନ୍ତ ଅନୁଷ୍ଠାନ, ଏକ ନବୀନ ଆଦର୍ଶ । ଏହାବ୍ୟତୀତ ନାନା ବିଶେଷ ଧରଣର ଜ୍ଞାନକୋଷ ଏଦେଶରେ ସଙ୍କଳିତ ହୋଇଛି । ଏବେ "ଅଁ ସିକ୍ଲୋପେଦି ଦ୍ୟୁ ଲ ପ୍ଲେଇଆଦ୍" ନାମରେ ଏକ ନୂତନ ଜ୍ଞାନକୋଷ ଅନୁଷ୍ଠାନର କାର୍ଯ୍ୟ ଆରମ୍ଭ କରା ହୋଇଛି । ଏହି ଜ୍ଞାନକୋଷ ଚିରାଚରିତ ଅକ୍ଷର କ୍ରମ ଛାଡ଼ି ନୂତନ ଭାବରେ ବିଷୟ କ୍ରମରେ ସଙ୍କଳିତ ହେଉଛି । ପୃଥିବୀର ସମସ୍ତ ଦେଶ ଜାତିକୁ ସମାନ ଗୁରୁତ୍ୱ ଦେଇ ଏହାର ବିଷୟବସ୍ତୁ ଆହରଣ କରା ଯାଉଛି । ଏହାର ସାହିତ୍ୟଭାଗର ପ୍ରଥମଖଣ୍ଡ ପ୍ରାଚୀନ, ପ୍ରାଚ୍ୟ ଓ ଲୋକ-ସାହିତ୍ୟ ବିଷୟକ ଆଲୋଚନା ଘେନି ଆତ୍ମପ୍ରକାଶ କରିଛି ।

ଜ୍ଞାନ ବିଜ୍ଞାନ ରାଜ୍ୟରେ ଜର୍ମାନୀର ପ୍ରତିଷ୍ଠା ଅନନ୍ୟସାଧାରଣ । ଗତ ଦୁଇଶହ ବର୍ଷ ଧରି ଏ ଦେଶରେ ଉଚ୍ଚକୋଟିର ଜ୍ଞାନକୋଷମାନ

ସଙ୍କଳିତ ହୋଇ ଆସୁଛି । ୧୮୭୦ରେ ଜର୍ମାନ୍ ସାମ୍ରାଜ୍ୟ ପ୍ରତିଷ୍ଠା ହେଲା । ତା' ପୂର୍ବରୁ ସଂସ୍କୃତପ୍ରେମୀ ଜର୍ମାନ ନରପତିମାନଙ୍କ ପୃଷ୍ଠପୋଷକତାରେ ପ୍ରଥମ ବିଖ୍ୟାତ ଜର୍ମାନ ଜ୍ଞାନକୋଷ ସଙ୍କଳିତ ହୋଇଥିଲା । ୧୭୩୨-୧୭୫୦—ଏହି ଅଠରବର୍ଷ କାଳ ଏଥିଲାଗି ବହୁ ପଣ୍ଡିତ ଏକତ୍ର କାର୍ଯ୍ୟ କରିଥିଲେ । ଏହି ଜ୍ଞାନକୋଷ ୬୪ ଖଣ୍ଡରେ ସମ୍ପୂର୍ଣ୍ଣ । ଏଥିରେ ଅଷ୍ଟାଦଶ ଶତକ ଜର୍ମାନୀର ମୁକ୍ତ ରୋମାଣ୍ଟିକ ଆତ୍ମାର ପ୍ରକାଶ ଘଟିଥିଲା । ଜର୍ମାନ ସାମ୍ରାଜ୍ୟ ପ୍ରତିଷ୍ଠାର ଉଦ୍‌ଯୋଗ ଭିତରେ ପୃଥିବୀର ଜ୍ଞାନରାଜ୍ୟର ଶୀର୍ଷସ୍ଥାନ ଅଧିକାର ଲାଗି ଏ ଦେଶରେ ଉଦ୍ୟମ ଆରମ୍ଭ ହୋଇଥିଲା । ତାର ନିଦର୍ଶନ ଏର୍ଶ (Ersch) ଓ ଗ୍ରୁବାର (Gruber)ଙ୍କ ସଙ୍କଳିତ ପୃଥିବୀର ବୃହତ୍ତମ ଜ୍ଞାନକୋଷ ୧୮୧୮ରୁ ୧୮୫୦—ଏହି ବତିଶବର୍ଷମଧ୍ୟରେ ଏହାର ୧୭୦ଟି ଖଣ୍ଡ ପ୍ରକାଶିତ ହୋଇଥିଲା । ନାନା ଅପ୍ରତ୍ୟାଶିତ କାରଣରୁ ଶେଷ କେତୋଟି ଖଣ୍ଡ ସଙ୍କଳିତ ହୋଇ ପାରିନାହିଁ । ଆଜି ପର୍ଯ୍ୟନ୍ତ ଜ୍ଞାନ ବିଜ୍ଞାନର ସମସ୍ତ ଶାଖା ପ୍ରଶାଖାରେ ସୂକ୍ଷ୍ମାନୁସୂକ୍ଷ୍ମ ବିଶଦ ଆଲୋଚନା ପାଇଁ ଆଉ କେଉଁଠି ଏଭଳି ପ୍ରଚେଷ୍ଟା ହୋଇ ନାହିଁ । ଏହିସବୁ ଜ୍ଞାନକୋଷ ଅତି ବିପୁଳକାୟ ହୋଇଥିବାରୁ ସାଧାରଣ ବ୍ୟବହାର ପାଇଁ ବିଶେଷ ଉପଯୋଗୀ ନୁହେ । ସାଧାରଣଙ୍କ ବ୍ୟବହାରରେ ଆସିଲାଭଳି ଅନେକ ସାନ ସାନ ଜ୍ଞାନକୋଷ ଏ ଦେଶରେ ସଙ୍କଳିତ ହୋଇଛି । ସମସ୍ତ ପାଶ୍ଚାତ୍ୟ ଜଗତର ବୁଦ୍ଧିଜୀବୀଙ୍କ ନିକଟରେ ଏଗୁଡ଼ିକ ଅତି ପ୍ରିୟ । ଅତି ସଂକ୍ଷିପ୍ତ ପରିସର ମଧ୍ୟରେ ସମସ୍ତ ବିଷୟରେ ପୁଙ୍ଖାନୁପୁଙ୍ଖ ତଥ୍ୟ ପରିବେଷଣ ଏଥିର ବିଶେଷତ୍ୱ ।

ଇଂଲଣ୍ଡକୁ ଛାଡ଼ି ଅନ୍ୟାନ୍ୟ ଇଉରୋପୀୟ ଦେଶ ମଧ୍ୟରେ ସ୍ପେନ୍, ଇଟାଲି, ସୁଇଜରଲ୍ୟାଣ୍ଡ, ସୁଇଡ଼େନ୍, ହଙ୍ଗେରି, ଡେନ୍‌ମାର୍କ ପ୍ରଭୃତି ଦେଶରେ ଜାତିହୋଟିର ଜ୍ଞାନକୋଷମାନ ସଙ୍କଳିତ୍ୟ ହୋଇଛି । ତେବେ ଏ ଦିଗରେ ସ୍ପେନ ଓ ଇଟାଲିର ଦାନ ବିଶେଷ ଉଲ୍ଲେଖଯୋଗ୍ୟ । ବିଂଶ ଶତକର ବୃହତ୍ତମ ଜ୍ଞାନକୋଷ ସ୍ପେନର ଏସ୍‌ପାସା ( Espasa ) ୧୯୦୫-୧୯୧୩ ମଧ୍ୟରେ ୭୦ ଖଣ୍ଡରେ ସଙ୍କଳିତ ହୋଇଛି । ଏହା ଜୀବନ୍ତ । ଏହାର ଏବେ ଦଶୋଟି ପରିପୂରକ ଖଣ୍ଡ ଓ ସ୍ୱତନ୍ତ୍ର ଭାଗରେ

ସଙ୍କଳିତ ସୂଚୀ ଓ ଅଧ୍ୟୟନ ନିର୍ଦ୍ଦେଶିକା ଖଣ୍ଡ ପ୍ରକାଶିତ ହୋଇଛି । ଏଥିରେ ଅଶୀଲକ୍ଷ ପ୍ରବନ୍ଧ ଓ ଏକଲକ୍ଷ ପଞ୍ଚାବନ ହଜାର ଜୀବନୀ ସଂଗୃହୀତ ହୋଇଛି । ପୃଥିବୀର ସମସ୍ତ ଭୌଗୋଳିକ ବିବରଣୀ ସହିତ ନଗର-ଗୁଡ଼ିକର ମାନଚିତ୍ର ଦିଆ ହୋଇଛି । କେବଳ ସ୍ପେନ ବିଷୟକ ସମସ୍ତ ତଥ୍ୟ ଏକ ସ୍ୱତନ୍ତ୍ର ଖଣ୍ଡ ହୋଇଛି । ଫରାସୀ ଲାରୋଜ୍ ଜ୍ଞାନକୋଷ ଏହାର ଆଦର୍ଶ । ଏକାଧାରରେ ଅଭିଧାନ ଓ ଜ୍ଞାନକୋଷ ଉଭୟ ଉଦ୍ଦେଶ୍ୟ ଏହା ପୂର୍ଣ୍ଣ କରିଥାଏ ।

ଇଟାଲୀୟ ଖଣ୍ଡରେ କଳା ଓ ସ୍ଥାପତ୍ୟର ଦେଶରୂପେ ଇଟାଲୀ ପ୍ରସିଦ୍ଧ । ଏ ଦେଶରେ ଆଧୁନିକତମ ଜ୍ଞାନକୋଷ ୧୯୨୯—୧୯୩୯ ମଧ୍ୟରେ ୩୯ ଖଣ୍ଡରେ ସଙ୍କଳିତ ହୋଇଛି । ଏଥିରେ ଶିଳ୍ପ ଓ କଳା ଆଲୋଚନା ଅଂଶ ଅତି ଚମତ୍କାର, ବହୁ ପ୍ରାଚୀନ ଓ ଆଧୁନିକ ଶିଳ୍ପକୃତିରେ ପରିପୂର୍ଣ୍ଣ । ଶିଳ୍ପୀ, କଳାବିତ୍ ଓ ସ୍ଥପତିଙ୍କ ଲାଗି ଏହି ଗ୍ରନ୍ଥ ବିଶେଷ ଉପଯୋଗୀ । ଋଷ ଦେଶରେ କମ୍ୟୁନିଷ୍ଟ ସରକାର ପ୍ରତିଷ୍ଠିତ ହେବା ପରେ ସମ୍ପୂର୍ଣ୍ଣ ସରକାରୀ ଆୟୋଜନରେ ୧୯୨୬—୩୪ ମାତ୍ର ଆଠବର୍ଷ ମଧ୍ୟରେ ବିପୁଳକାୟ ଜ୍ଞାନକୋଷ ସଙ୍କଳିତ ହୋଇଛି । ମାର୍କ୍ସୀୟ ବସ୍ତୁବାଦ ଏହାର ପ୍ରଧାନ ଅଭିମୁଖ୍ୟ ।

## ଇଂଲଣ୍ଡ ଓ ଆମେରିକାରେ

ବ୍ରିଟିଶ ଜ୍ଞାନକୋଷ 'ବ୍ରିଟାନିକା' ସହିତ ଆମ ଦେଶରେ ସମସ୍ତେ ପରିଚିତ । 'ବ୍ରିଟାନିକା' ପୂର୍ବରୁ ଚେମ୍ବାରଙ୍କ ସାଇକ୍ଲୋପିଡ଼ିଆ ଅତି କ୍ଷୁଦ୍ର କଳେବରରେ ପ୍ରକାଶିତ ହୋଇଥିଲା । କିନ୍ତୁ ଇଂଲଣ୍ଡରେ ଆଧୁନିକ ଦୃଷ୍ଟିକୋଣରୁ ପ୍ରଥମ ଜ୍ଞାନକୋଷ 'ବ୍ରିଟାନିକା' ଦ'ଦେରୋଙ୍କ ବିଖ୍ୟାତ ଜ୍ଞାନକୋଷ ପ୍ରକାଶିତ ହେବାର ୧୭ବର୍ଷ ପରେ ୧୭୬୮ ଖ୍ରୀ: ଅ:ରେ ଏହାର ଆଦ୍ୟ ପ୍ରକାଶନ ଆରମ୍ଭ ହେଲା । 'ବ୍ରିଟାନିକା' ପ୍ରକାଶର ଇତିହାସ ବଡ଼ କୌତୁକାବହ । ପ୍ରଥମେ ଏହା କ୍ଷୁଦ୍ର ପୁସ୍ତିକା ଆକାରରେ ସପ୍ତାହକୁ ସପ୍ତାହ ପ୍ରକାଶିତ ହୋଇ ପ୍ରତ୍ୟେକ ସଂଖ୍ୟା ଛ ରୁ ଆଠ ପେନ୍ସ ମୂଲ୍ୟରେ ବିକ୍ରୀ ହେଉଥିଲା । ଗ୍ରାହକ ଶହେରୁ ଅଧିକ ନ ଥିଲେ । ତିନିବର୍ଷ ମଧ୍ୟରେ ଏହାର ପ୍ରଥମ ସଂସ୍କରଣ ମୁଦ୍ରିତ ହୋଇଥିଲା । ତିନିଖଣ୍ଡରେ ବିଭକ୍ତ

'ବ୍ରିଟାନିକା'ର ମୋଟ ପୃଷ୍ଠା ସଂଖ୍ୟା ଥିଲା ମାତ୍ର ୨୬୭୦ । ଅଷ୍ଟମ ସଂସ୍କରଣ ପର୍ଯ୍ୟନ୍ତ ଏହାର ବିଶେଷ କୌଣସି ପରିବର୍ତ୍ତନ ହୋଇ ନ ଥିଲା । ନବମ ସଂସ୍କରଣକୁ ନୂଆ ଭାବରେ ସଂଶୋଧନ ଓ ପରିବର୍ଦ୍ଧନ କରିବାର ଯୋଜନା ହୋଇଥିଲା । ୧୮୭୫ରୁ ୧୮୮୯ ଯାଏ ୧୪ବର୍ଷ ମଧ୍ୟରେ ନୂତନ ନବମ ସଂସ୍କରଣ ସଙ୍କଳିତ ହେଲା । ୧୯୨୯ରେ ପ୍ରକାଶିତ ପରିବର୍ଦ୍ଧିତ ୧୪ଶ ସଂସ୍କରଣଟି ସବୁଠାରୁ ପ୍ରାମାଣିକ ସଙ୍କଳନ । ଏହା ୨୪ଖଣ୍ଡରେ ସମ୍ପୂର୍ଣ୍ଣ । ଏଥି ପୂର୍ବରୁ ବ୍ରିଟାନିକାର କେବଳ ବ୍ରିଟିଶ ଜାତୀୟ ଦୃଷ୍ଟିକୋଣ ପ୍ରଧାନ ଥିଲା । ଏବେ ଏହା ଆନ୍ତର୍ଜାତୀୟ ବିଗ୍ଭରଧାରାରେ ପୁଷ୍ଟ ହେଲା । ଲଣ୍ଡନ ଓ ନିଉୟର୍କରେ ସ୍ୱତନ୍ତ୍ର ଉପଦେଷ୍ଟା ସମିତି ଓ କାର୍ଯ୍ୟାଳୟମାନ ପ୍ରତିଷ୍ଠିତ ହେଲା । ମନୁଷ୍ୟର କ୍ରମ ବର୍ଦ୍ଧମାନ ଜ୍ଞାନରାଶିର ଅନୁସରଣ ଏହାର ଆଦର୍ଶ ହେଲା । ୧୯୩୩ରୁ 'ବ୍ରିଟାନିକା'ର ସ୍ୱତନ୍ତ୍ର ସଂସ୍କରଣ ପ୍ରକାଶ ପାଉନାହିଁ । ତାହା ପରିବର୍ତ୍ତେ ଆବଶ୍ୟକମତେ ପରିପୂରକ ଖଣ୍ଡମାନ ପ୍ରକାଶିତ ହେଉଛି । ତଥାପି 'ବ୍ରିଟାନିକା' ରକ୍ଷଣଶୀଳ ପରମ୍ପରାରୁ ମୁକ୍ତ ହୋଇ ପାରିନାହିଁ । ସମାଲୋଚକଙ୍କ ମତରେ ଏଥିଲାଗି ଏହା ବିଶ୍ୱ ଜ୍ଞାନକୋଷର ଆଦର୍ଶରୁ ବହୁ ଦୂରରେ ଅଛି ।

ଆମେରିକାରେ ଜ୍ଞାନକୋଷ ପ୍ରକାଶନ ଅପେକ୍ଷାକୃତ ବିଳମ୍ବରେ ଘଟିଥିଲେହେଁ, ଏହାର ପ୍ରସାର ସବୁଠାରୁ ଅଧିକ । ପୃଥିବୀରେ ଯେତେ ପ୍ରକାର ଜ୍ଞାନକୋଷ ପ୍ରକାଶ ପାଇଛି ଓ ପାଉଛି—ସେ ସମସ୍ତର ପରୀକ୍ଷା ଆମେରିକାରେ ହୋଇଛି । ଜଣେ ଆମେରିକାନ୍‌ବାସୀ ଜର୍ମାନ୍ ଅଷ୍ଟାଦଶ ଶତକର ଶେଷ ଆଡ଼କୁ ଏ ଦେଶରେ ପ୍ରଥମେ ଜ୍ଞାନକୋଷ ପ୍ରକାଶ କରିଥିଲେ । ଏହା ଗୋଟିଏ ଜର୍ମାନ ଜ୍ଞାନକୋଷ ଅବଲମ୍ବନରେ ସଙ୍କଳିତ ହୋଇଥିଲା । ଊନବିଂଶ ଶତକ ଶେଷସୁଦ୍ଧା ଏହାର ମାତ୍ର ପାଞ୍ଚଟି ସଂସ୍କରଣ ହୋଇଥିଲା ଓ ଗୋଟିଏ ପରିପୂରକଖଣ୍ଡ ବାହାରିଥିଲା । ବିଂଶ ଶତକର ଆରମ୍ଭରେ 'ଏନ୍‌ସାଇକ୍ଲୋପିଡ଼ିଆ ଆମେରିକାନା'ର ପରିକଳ୍ପନା ହେଲା । ଏହାକୁ ଏକ ଶ୍ରେଷ୍ଠ ଜ୍ଞାନକୋଷର ରୂପ ଦେବାଲାଗି ଗୋଟିଏ କର୍ପୋରେସନ୍ ଗଢ଼ାଗଲା । ଏଥିରେ ଆମେରିକାର ବହୁ ବିଶିଷ୍ଟ ବ୍ୟକ୍ତି, ସାହିତ୍ୟିକ, ବୈଜ୍ଞାନିକ, ରାଜନୈତିକ ସଭ୍ୟ ହେଲେ । ଆନ୍ତର୍ଜାତୀୟ ଦୃଷ୍ଟିକୋଣରୁ ପୃଥିବୀର ସମସ୍ତ ଜ୍ଞାନଧାରା ଆମେରିକାନାର ସମ୍ପର୍କଭୁକ୍ତ କରିବା ଏମାନଙ୍କର ଲକ୍ଷ୍ୟ ଥିଲା । ବିଜ୍ଞାନ,

ଟେଟକ୍ନୋଲୋଜି, ଆଧୁନିକ ସମାଜବିଜ୍ଞାନ, ଆମେରିକାର ବିଖ୍ୟାତ ବ୍ୟକ୍ତିଙ୍କ ଜୀବନୀ ଓ ଇତିହାସ ସମ୍ବନ୍ଧରେ ଏକ ପ୍ରଧାନ ପ୍ରାମାଣିକ ଜ୍ଞାନକୋଷରୂପେ 'ଆମେରିକାନା'ର ପ୍ରଥମ ସଂସ୍କରଣ ୧୯୧୮ରେ ୨୦ଖଣ୍ଡରେ ପ୍ରକାଶିତ ହେଲା । ୧୯୨୦ରେ ଏହାର ପରିବର୍ଦ୍ଧିତ ସଂସ୍କରଣ ୩୦ଖଣ୍ଡରେ ପ୍ରକାଶିତ ହୋଇଛି । ଏଥିରେ କୋଡ଼ିଏଟି ଅଧ୍ୟାୟରେ ସ୍ୱତନ୍ତ୍ର ଭାବରେ ପୃଥିବୀର ଇତିହାସ ଦିଆଯାଇଛି । ୧୯୨୩ଠାରୁ 'ଆମେରିକାନା'ର ବାର୍ଷିକୀ ପ୍ରକାଶ ପାଉଛି । 'ଆମେରିକାନା' ବର୍ତ୍ତମାନ ପୃଥିବୀର ସବୁଠାରୁ ଅଧିକ ପ୍ରଚଳିତ ଜ୍ଞାନକୋଷ । ୧୯୩୬ ମସିହାରୁ ପ୍ରତ୍ୟେକ ବର୍ଷ ଏହାର ଏକାଧିକ ମୁଦ୍ରଣ ଆବଶ୍ୟକ ହେଉଛି । ପ୍ରତ୍ୟେକ ମୁଦ୍ରଣରେ ଯାନ୍ତ୍ରିକ ଉପାୟରେ ଆକୁଞ୍ଚନ ଓ ସମ୍ପ୍ରସାରଣ ଦ୍ୱାରା ଏଥିରେ ନୂତନ ତଥ୍ୟଗୁଡ଼ିକର ସମାବେଶ କରାଯାଉଛି । ଏକ ବୃହତ୍ତମ ସମ୍ବାଦପତ୍ରର ସମ୍ପାଦନାମଣ୍ଡଳୀ ଭଳି 'ଆମେରିକାନା'ର ସ୍ଥାୟୀ ସମ୍ପାଦନା ଅନୁଷ୍ଠାନ ଅଛି ବିରାଟ । ବହୁ ବିଭାଗୀୟ ସମ୍ପାଦକ ଓ ଶତ ସଂଖ୍ୟକ ସହକାରୀ ସମ୍ପାଦକ ଏହାର ପରିମାର୍ଜନ ଓ ପରିବର୍ତ୍ତନ କାର୍ଯ୍ୟରେ ସତତ ନିଯୁକ୍ତ ଥାଆନ୍ତି । ଏଥିଲାଗି ଦ୍ୱିତୀୟ ବିଶ୍ୱଯୁଦ୍ଧ ପରବର୍ତ୍ତୀ ପୃଥିବୀ ବିଷୟରେ ସମସ୍ତ ଜ୍ଞାତବ୍ୟ ତଥ୍ୟ ଅତି ବିଶଦ ଭାବରେ ଏଥିରେ ସଂଗୃହୀତ ହୋଇପାରିଛି ।

## ଏସିଆଖଣ୍ଡ ଓ ଭାରତବର୍ଷରେ

ଏସିଆଖଣ୍ଡରେ ଜ୍ଞାନକୋଷ ସଙ୍କଳନରେ ଜାପାନ ଅଗ୍ରଣୀ । ଜ୍ଞାନବିଜ୍ଞାନର ପ୍ରତ୍ୟେକ ଶାଖାକୁ ନେଇ ଏଠାରେ ଅତି ଉଚ୍ଚକୋଟିର ସ୍ୱତନ୍ତ୍ର ଜ୍ଞାନକୋଷମାନ ସଙ୍କଳିତ ହୋଇଛି । ଏ ଦିଗରେ ଏହା ଉନ୍ନତ ପାଶ୍ଚାତ୍ୟ ଦେଶଗୁଡ଼ିକର ସମକକ୍ଷ । ଜାପାନର ବୃହତ୍ତମ ଜାତୀୟ ଜ୍ଞାନକୋଷ "ଦାଇ-ହ୍ୟା-କ୍କା ଜି-ତେଁ ।" ୨୮ ଖଣ୍ଡରେ ସମ୍ପୂର୍ଣ୍ଣ ଏଇ ବିରାଟ ଜ୍ଞାନକୋଷର ପ୍ରଥମ ସଂସ୍କରଣ ୧୯୪୫ ଖ୍ରୀ: ଅ:ରେ ପ୍ରକାଶିତ ହୋଇଛି । ଏହାର ମୁଦ୍ରଣରେ ପାଞ୍ଚବର୍ଷ ଲାଗିଥିଲା । ବିଖ୍ୟାତ ଜାପାନୀ ପଣ୍ଡିତ ହେ-ବଁ-ଶାଙ୍କ ନିର୍ଦ୍ଦେଶରେ ତିନିହଜାର ଜାପାନୀ ପଣ୍ଡିତ ଏହାର ତଥ୍ୟ ସଂଗ୍ରହ କାର୍ଯ୍ୟ କରିଥିଲେ । ଏଥିଲାଗି ୨୫ବର୍ଷ ଲାଗିଥିଲା । ଏହାର ଇଣ୍ଡେକ୍ସ ଓ ଅଧ୍ୟୟନ ସୂଚନା ସ୍ୱତନ୍ତ୍ର ଖଣ୍ଡରେ ସଙ୍କଳିତ । ଦ୍ୱିତୀୟ ବିଶ୍ୱଯୁଦ୍ଧ ଓ ତତ୍ପରବର୍ତ୍ତୀ ଅବସ୍ଥା ଉପରେ ଆଲୋକପାତ କରିବାକୁ

୧୯୪୮ରେ ୭ଖଣ୍ଡ ଓ ୧୯୫୭ରେ ୮ଖଣ୍ଡ—ଏହାପରେ ଗୋଟିଏ ଖଣ୍ଡ ପରିପୂରକ ଗ୍ରନ୍ଥ ଏଥି ସହିତ ସଂଯୁକ୍ତ କରାହୋଇଛି । ସମସ୍ତ ପରିପୂରକ ଖଣ୍ଡ ସହିତ ଏହି ଜାପାନୀ ଜ୍ଞାନକୋଷ ବ୍ରିଟାନିକା ଓ ଏନ୍‌ସାଇକ୍ଲୋପିଡ଼ିଆ ଆମେରିକାନାଠାରୁ ଆକାରରେ ଅନେକ ବଡ଼ । ଏବେ ନୂତନ ପରିକଳ୍ପନା ଅନୁସାରେ ଏହି ଜ୍ଞାନକୋଷର ଗୋଟିଏ ସଂଶୋଧିତ ଓ ପରିବର୍ଦ୍ଧିତ ସଂସ୍କରଣ କାର୍ଯ୍ୟ ଦ୍ରୁତଗତିରେ ଚାଲିଛି । ବର୍ତ୍ତମାନ ସୁଦ୍ଧା ଏ ନୂତନ ସଂସ୍କରଣର ୧୦ଖଣ୍ଡ ଗ୍ରନ୍ଥ ପ୍ରକାଶ ପାଇ ସାରିଲାଣି । ଏ ସଂସ୍କରଣ ସମ୍ପୂର୍ଣ୍ଣ ହେଲେ ଏହା ସବୁ ଦୃଷ୍ଟିରୁ ବିଶ୍ୱର ଏକ ଶ୍ରେଷ୍ଠ ଜ୍ଞାନକୋଷ ହେବ । ଏଥିରେ ପ୍ରତ୍ୟେକ ଜୀବନୀ, ବୈଜ୍ଞାନିକ ଓ ଟେକ୍‌ନିକାଲ ପ୍ରବନ୍ଧ ସହିତ ଫଟୋ, ଛବି, ଚାର୍ଟ ଆଦି ଆବଶ୍ୟକମତେ ଦିଆଯାଇଛି । ଶିଳ୍ପ ଓ ଚାରୁକଳା ବିଷୟକ ଲେଖମାଳା ଚୀନ, ଜାପାନ୍, ଭାରତ ଓ ପୃଥିବୀର ଅନ୍ୟାନ୍ୟ ଦେଶର ବିଖ୍ୟାତ ଚିତ୍ରାବଳୀରେ ଶୋଭିତ ହୋଇଛି । ଏହି ଜ୍ଞାନକୋଷ ଯଥାର୍ଥରେ ହେବ ଜାପାନୀ ଜାତିର ଉନ୍ନତ ରୁଚିବୋଧ ଓ ଅତୁଳନୀୟ ଜ୍ଞାନପିପାସାର ଶ୍ରେଷ୍ଠ ନିଦର୍ଶନ ।

## ତାମିଲ ଓ ତେଲଗୁରେ ନୂତନ ପରିକଳ୍ପନା

ଭାରତବର୍ଷରେ ଜ୍ଞାନକୋଷ ସଙ୍କଳନ ଏବେ ବି ଶୈଶବ ଅତିକ୍ରମ କରିନାହିଁ । ରାଷ୍ଟ୍ରଭାଷାରେ ଏହା ଏବେ ବି କଳ୍ପନା ସ୍ତରରେ ଅଛି । ବନାରସର ନାଗରୀ ପ୍ରଚାରିଣୀ ସଭା ଏ ଦିଗରେ କେତେକ ଆୟୋଜନ କରିଛନ୍ତି, କିନ୍ତୁ ବିଶେଷ ଅଗ୍ରସର ହୋଇ ନାହାନ୍ତି । ମାନ୍ଦ୍ରାଜର ତାମିଲ୍ ଏକାଡେମୀ ତାମିଲଭାଷାରେ ଜ୍ଞାନକୋଷ ପ୍ରଣୟନ କାର୍ଯ୍ୟରେ ଅନେକ ଦୂର ଅଗ୍ରସର ହୋଇଛି । ଏହି କାର୍ଯ୍ୟରେ ମାନ୍ଦ୍ରାଜ ସରକାର ଓ ତାମିଲନାଡ଼ର ବିତ୍ତଶାଳୀ ଲୋକେ ମୁକ୍ତହସ୍ତରେ ଅର୍ଥ ସାହାଯ୍ୟ କରୁଛନ୍ତି । ଏହାର ମୁଖ୍ୟ ସମ୍ପାଦକ ଶ୍ରୀଯୁକ୍ତ ପେରିଆସ୍ୱାମୀ ଥୋରନ୍ ବିଶ୍ୱାସ କରନ୍ତି, ଆସନ୍ତା ଚାରିବର୍ଷ ମଧ୍ୟରେ ତାମିଲ ଜ୍ଞାନକୋଷ ସଙ୍କଳନ କାର୍ଯ୍ୟ ପ୍ରଥମ ସ୍ତରରେ ଶେଷ ହୋଇ ପାରିବ । ତାମିଲଭଳି ତେଲଗୁରେ ଜ୍ଞାନକୋଷ ସଙ୍କଳନ ଆରମ୍ଭ କରାହୋଇଛି । କିନ୍ତୁ ତେଲଗୁ ଜ୍ଞାନକୋଷର ପରିକଳ୍ପନା ଅଭିନବ । ଏହା କେତେକ ପରିମାଣରେ ଫରାସୀ "ଅ" ସିକ୍ଲୋପେଡି ଦ୍ୟୁ ଯାଁଲ ପ୍ଲେଇଆଦ" ସହ ତୁଳନୀୟ । ଏହାର

ମୁଖ୍ୟ ବିଭାଗ ବିଷୟ କ୍ରମରେ ହୋଇଛି । ସମୁଦାୟ ଜ୍ଞାନକୋଷଟି ୧୨ ଖଣ୍ଡରେ ବିଭକ୍ତ ହେବ । ପ୍ରତିଖଣ୍ଡରେ ଏକହଜାର ପୃଷ୍ଠା ରହିବ । ଛଅ ଖଣ୍ଡରେ ବିଜ୍ଞାନ ବିଷୟ ଓ ଅନ୍ୟ ଛଅ ଖଣ୍ଡରେ କଳାବିଷୟ ସ୍ଥାନ ପାଇବ । ପ୍ରତି ଖଣ୍ଡରେ ଗୋଟିଏ ମୁଖ୍ୟ ବିଷୟ ସହିତ ଏକାଧିକ ସଂପୃକ୍ତ ବିଷୟ ମଧ୍ୟ ଦିଆଯାଉଛି । ବର୍ତ୍ତମାନ ଇତିହାସ ଓ ରାଜନୀତି ଖଣ୍ଡ, ପଦାର୍ଥ ଓ ରସାୟନ ବିଜ୍ଞାନ ଖଣ୍ଡ ମୁଦ୍ରିତ ହୋଇସାରିଛି । 'ଅନ୍ଧ୍ରସଂସ୍କୃତି ଖଣ୍ଡ' ଓ 'ଭୂଗୋଳ ବାଣିଜ୍ୟ ଓ ଅର୍ଥନୀତି ଖଣ୍ଡ' ମୁଦ୍ରିତ ହୋଇଛି । ପ୍ରତିଖଣ୍ଡ ଦୁଇ ଭାଗରେ ବିଭକ୍ତ । ପ୍ରଥମ ଏକ ତୃତୀୟାଂଶରେ ସମଗ୍ର ବିଷୟ ଉପରେ ଏକ ଶୃଙ୍ଖଳିତ ଦୃଷ୍ଟି ସମ୍ବଳିତ ବିବରଣୀ ଓ ଅବଶିଷ୍ଟ ଦ୍ୱିତୃତୀୟାଂଶରେ ବିଶେଷ ବିବରଣୀ ଅକ୍ଷର କ୍ରମରେ ସଜ୍ଜିତ ହୋଇ ସ୍ଥାନ ପାଇଛି । ଅନ୍ଧ୍ର ସଂସ୍କୃତି ଖଣ୍ଡ ଏହି ଜ୍ଞାନକୋଷର ବିଶେଷତ୍ୱ ହୋଇ ରହିବ । ଏଥିରେ ତେଲୁଗୁ ଦେଶ ଓ ଜନସାଧାରଣଙ୍କ ବିଷୟରେ ସମସ୍ତ ତଥ୍ୟ ସଂଗୃହୀତ ହୋଇଛି । ୧୯୭୦ ମସିହା ମଧ୍ୟରେ ଏହି ଜ୍ଞାନକୋଷ ଶେଷ ହୋଇ ପାରିବ ବୋଲି କଳନା କରାଯାଇଛି । ଏକହଜାର ଲେଖକ ଓ ପଣ୍ଡିତ ବ୍ୟକ୍ତିଙ୍କ ସହଯୋଗରେ ଏହା ସଙ୍କଳିତ ହେବ ଓ ଏଥିଲାଗି ୧୫ ଲକ୍ଷ ଟଙ୍କା ବ୍ୟୟିତ ହେବ ।

## ବଙ୍ଗ ଓ ମହାରାଷ୍ଟ୍ରରେ

ଏହିସବୁ ନବୀନ ଉଦ୍ୟମ ବ୍ୟତୀତ ବଙ୍ଗ ଓ ମହାରାଷ୍ଟ୍ରରେ ଯେଉଁ ଉନ୍ନତି ହୋଇଛି ତାହା ଉଲ୍ଲେଖ ଯୋଗ୍ୟ । ଗତ ଶତକର ଶେଷ ଅଡ଼କୁ ବଙ୍ଗଳାରେ ବିଶ୍ୱକୋଷ ସଂକଳନ କାର୍ଯ୍ୟ ଶ୍ରୀଯୁକ୍ତ ରଙ୍ଗଲାଲ ମୁଖୋପାଧ୍ୟାୟ ଓ ତ୍ରୈଲୋକ୍ୟନାଥ ମୁଖୋପାଧ୍ୟାୟଙ୍କ ମିଳିତ ଉଦ୍ୟମରେ ଆରମ୍ଭ ହୋଇଥିଲା । କିନ୍ତୁ ବ୍ୟୟ ବାହୁଲ୍ୟ ଓ ପୃଷ୍ଠପୋଷକତା ଅଭାବରୁ ପ୍ରଥମଖଣ୍ଡ ସଙ୍କଳନ ପରେ କାର୍ଯ୍ୟ ବନ୍ଦ ହୋଇ ଯାଇଥିଲା । କିନ୍ତୁ ଶ୍ରୀଯୁକ୍ତ ନଗେନ୍ଦ୍ର ବସୁ ନୂତନ ଉଦ୍ୟମରେ ଏହାର ସଙ୍କଳନ କାର୍ଯ୍ୟ ଆରମ୍ଭ କରିଥିଲେ । ୨୪ ବର୍ଷର ନିରବଚ୍ଛିନ୍ନ ସାଧନାବଳରେ ସେ ଏଥିରେ ସଫଳ ହୋଇଥିଲେ । ୧୭ ହଜାର ପୃଷ୍ଠାର ଏହି ଗ୍ରନ୍ଥ ୨୨ ଖଣ୍ଡରେ ପ୍ରକାଶିତ ହୋଇଥିଲା । ଏଥିରେ ଜ୍ଞାନକୋଷ ଓ ଭାଷାକୋଷ ଉଭୟର ସମନ୍ୱୟ ପ୍ରଚେଷ୍ଟା ହୋଇଛି ।

ଏଥିଲାଗି ଏହାକୁ "ଯାବତୀୟ ସଂସ୍କୃତ, ବଙ୍ଗଳା, ଗ୍ରାମ୍ୟ ଶବ୍ଦର ଅର୍ଥ ଓ ବ୍ୟୁତ୍ପତ୍ତି, ଆରବ୍ୟ, ପାରସ୍ୟ, ହିନ୍ଦୀ ପ୍ରଭୃତିର ଚଳିତ ଶବ୍ଦ ଓ ତାହାର ଅର୍ଥ, ପ୍ରାଚୀନ ଓ ଆଧୁନିକ ଧର୍ମ ସମ୍ପ୍ରଦାୟ ଓ ସେମାନଙ୍କର ବିଶ୍ୱାସ ନୃତତ୍ତ୍ୱ, ଆର୍ଯ୍ୟ, ଅନାର୍ଯ୍ୟ ଜାତି ବୃତ୍ତାନ୍ତ, ବୈଦିକ, ପୌରାଣିକ, ଐତିହାସିକ, ସର୍ବଜାତୀୟ ପ୍ରସିଦ୍ଧ ବ୍ୟକ୍ତିଙ୍କର ବିବରଣ, ବେଦ, ବେଦାଙ୍ଗ, ପୁରାଣ, ତନ୍ତ୍ର, ବ୍ୟାକରଣ, ଅଳଙ୍କାର, ଛନ୍ଦୋବିଦ୍ୟା, ନ୍ୟାୟ, ଜ୍ୟୋତିଷ, ଉଦ୍ଭିଦ, ରସାୟନ, ଭୂତତ୍ତ୍ୱ ବିଜ୍ଞାନ, ବିଭିନ୍ନ ପ୍ରକାର ଶିକ୍ଷା ବିଜ୍ଞାନ, ଶିଳ୍ପ, ଇନ୍ଦ୍ରଜାଲ, କୃଷିତତ୍ତ୍ୱ ଓ ପାକବିଦ୍ୟାଦି ନାନା ଶାସ୍ତ୍ରର ସାର-ସଂଗ୍ରହର ଅକାରାଦି ବର୍ଣ୍ଣାନୁକ୍ରମେ ବୃହଦ୍ ଅଭିଧାନ" ବୋଲି କୁହାଯାଇପାରେ । ଏଥିରେ ସଙ୍କଳିତ ଭାରତବିଦ୍ୟା ଓ ଭାରତର ଜାତିତତ୍ତ୍ୱ ସମ୍ବନ୍ଧରେ ତଥ୍ୟାବଳୀ ସଂପାଦକଙ୍କ ସ୍ୱାଧୀନ ଗବେଷଣା ପ୍ରସୂତ । ସେ ବିଶେଷ ଭାବରେ ସନ୍ଧାନ କରି ପନ୍ଦର ଶହ ବଙ୍ଗଳା ଓ ପାଞ୍ଚ ଶହ ସଂସ୍କୃତ ପାଣ୍ଡୁଲିପିର ବିବରଣୀ ଓ ତଥ୍ୟ—ଏଥିରେ ଦେଇଅଛନ୍ତି । ଏ ସବୁ ଏହାର ବିଶେଷତ୍ୱ । ତଥାପି ଏହା ଏକ ଆଦର୍ଶ ବିଶ୍ୱକୋଷ ହୋଇ ପାରିନାହିଁ । ଏହାର ପ୍ରବନ୍ଧ ଗୁଡ଼ିକ ଏକ ନିର୍ଦ୍ଦିଷ୍ଟକ୍ରମରେ ଲିଖିତ ନୁହେଁ । ତେଣୁ ଶୈଳୀଗତ ସଙ୍ଗତି ରକ୍ଷିତ ହୋଇ ନାହିଁ । ପ୍ରବନ୍ଧ ସବୁ ଉପଶୀର୍ଷକ କ୍ରମରେ ସଜ୍ଜିତ ନୁହେଁ । ତେଣୁ ଗୋଟିଏ ଗୋଟିଏ ଦୀର୍ଘ ପ୍ରବନ୍ଧରୁ ଆବଶ୍ୟକ ଅଂଶ ଖୋଜି ପାଇବା କଠିନ । ପ୍ରବନ୍ଧରେ ଲେଖକଙ୍କ ନାମ, ଉପାଦାନ ଆହରଣର ମୂଳସ୍ରୋତ ସମ୍ବନ୍ଧରେ ସୂଚନା ବା ସହାୟକ ଗ୍ରନ୍ଥସୂଚୀ ଦିଆ ହୋଇନାହିଁ । ଏହି ସବୁ କାରଣରୁ ଏହା ଭାଷାକୋଷର ଉଦ୍ଦେଶ୍ୟ ଯେଉଁ ପରିମାଣରେ ପୂରଣ କରିପାରିଛି, ଜ୍ଞାନକୋଷର ଲକ୍ଷ୍ୟ ସେହି ପରିମାଣରେ ସାଧନ କରିପାରି ନାହିଁ । ତଥାପି ଏହା ଭାରତବର୍ଷରେ ଜ୍ଞାନକୋଷ ପ୍ରଣୟନର ଆଦ୍ୟ ପ୍ରଚେଷ୍ଟା । ସେଥିଲାଗି ସେତେବେଳେ ଏହା ଭାରତର ବିଭିନ୍ନ ପ୍ରାନ୍ତରେ ଆଦୃତ ହୋଇଥିଲା । ଏହାର କେତୋଟି ଖଣ୍ଡ ମଧ୍ୟ ହିନ୍ଦୀରେ ଅନୁବାଦିତ ଓ ପ୍ରକାଶିତ ହୋଇଥିଲା ।

ଡାଃ କେତକରଙ୍କ ସମ୍ପାଦନାରେ ୨୭ ହଜାର ପୃଷ୍ଠା ବଶିଷ୍ଟ ମହାରାଷ୍ଟ୍ର ଜ୍ଞାନକୋଷ ୨୭ ଖଣ୍ଡରେ ପ୍ରକାଶିତ ହୋଇଛ । ଏହାହିଁ ଯଥାର୍ଥରେ ଭାରତର ଆଧୁନିକ ଜ୍ଞାନକୋଷ । ବ୍ରିଟିଶ ଜ୍ଞାନକୋଷ ଏହାର ଆଦର୍ଶ ଓ ଅଧିକାଂଶ ସ୍ଥଳରେ ପ୍ରଧାନ ଅବଲମ୍ବନ । କିନ୍ତୁ ଏହାର ସଂପାଦକ ଭାରତବର୍ଷ ସମ୍ବନ୍ଧରେ ସମସ୍ତ ଜ୍ଞାତବ୍ୟ ତଥ୍ୟ ସ୍ୱତନ୍ତ୍ର ଭାବରେ ସଂଗ୍ରହ କରିଛନ୍ତି । ଏଥିଲାଗି ଅନେକ ଜର୍ମାନ ଓ ଫରାସୀ ପଣ୍ଡିତଙ୍କ ଲିଖିତ ଗ୍ରନ୍ଥର ସାହାଯ୍ୟ ଗ୍ରହଣ କରିଛନ୍ତି । ଉଇଣ୍ଟାରନିସଙ୍କ ବିଖ୍ୟାତ ସଂସ୍କୃତ ସାହିତ୍ୟର ଇତିହାସ ପ୍ରଥମେ ମହାରାଷ୍ଟ୍ର ଜ୍ଞାନକୋଷ ପାଇଁ ଜର୍ମାନରୁ ଅନୁବାଦ କରାଯାଇଥିଲା । ଏହା ବ୍ୟତୀତ, ବିଶେଷ ଧରଣର ଜ୍ଞାନକୋଷ ସଂକଳନରେ ମଧ୍ୟ ମହାରାଷ୍ଟ୍ର ଅଗ୍ରଣୀ । ପ୍ରାଚୀନ ଅର୍ବାଚୀନ ଚରିତ୍ରକୋଷ, ବ୍ୟାୟାମକୋଷ, ଧର୍ମକୋଷ, ଓ 'ବିଜ୍ଞାନବୋଧ' ଭଳି ଯେଉଁ ଗ୍ରନ୍ଥମାନ ମହାରାଷ୍ଟ୍ରର ପଣ୍ଡିତମାନେ ସଙ୍କଳନ କରିଛନ୍ତି, ତାହା ସମଗ୍ର ଭାରତବର୍ଷର ଆଦର୍ଶସ୍ଥାନୀୟ ।

## ଓଡ଼ିଶାରେ ଜ୍ଞାନକୋଷ ପ୍ରଣୟନ

ଓଡ଼ିଆ ଭାଷା ଓ ସାହିତ୍ୟର ଉନ୍ନତି ପାଇଁ ସ୍ୱର୍ଗତଃ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଭାଷାକୋଷ ଭଳି ଆଉ କୌଣସି ବୃହତ୍ତର ପ୍ରଚେଷ୍ଟା ହୋଇନାହିଁ । ଶ୍ରୀଯୁକ୍ତ ଭଗୀରଥି ମହାପାତ୍ରଙ୍କ 'ରତ୍ନକୋଷ' ଓ ଶ୍ରୀଯୁକ୍ତ ବାଳକୃଷ୍ଣ କରଙ୍କ 'ଶିଶୁସଙ୍ଗୀନୀ' ମଧ୍ୟରେ ଜ୍ଞାନକୋଷ ସଙ୍କଳନର କ୍ଷୀଣ ପ୍ରଚେଷ୍ଟା ଦେଖିବାକୁ ମିଳେ । 'ଶିଶୁସଙ୍ଗୀନୀ' ସାତ ଖଣ୍ଡରେ ସଂପୂର୍ଣ୍ଣ ହେବାର ପରିକଳ୍ପନା ହୋଇଥିଲା । ମାତ୍ର ଦୁଇଖଣ୍ଡ ପ୍ରକାଶିତ ହୋଇଛି । ଏହା ସଂପୂର୍ଣ୍ଣ ହୋଇ ପାରିଥିଲେ, ଓଡ଼ିଆରେ ପ୍ରଥମ କିଶୋର ଜ୍ଞାନକୋଷ ରଚନା ହୋଇ ପାରିଥାନ୍ତା । ଦୁର୍ଭାଗ୍ୟକୁ ତାହା ସମ୍ଭବ ହେଲା ନାହିଁ ।

ଓଡ଼ିଆରେ ଆଧୁନିକ ଅର୍ଥରେ ଗୋଟିଏ ଜ୍ଞାନକୋଷର ଅଭାବ ବହୁ ଦିନରୁ ଅନେକ ଅନୁଭବ କରି ଆସୁଛନ୍ତି । କିନ୍ତୁ ଅତୀତର ଭବିଷ୍ୟତରେ ଏପରି ଏକ ଜ୍ଞାନକୋଷ ସଙ୍କଳନ ହେ ସମ୍ଭବ, ସେକଥା

କେହି ଭାବୁ ନ ଥିଲେ । ଏ ସମ୍ଭାବନାର ଶବ୍ଦ ଡା. ମାନସିଂ ପ୍ରଥମେ ସାଧାରଣରେ ଥୋଇଲେ । ୧୯୪୯ ରେ ସେ ଉତ୍କଳ ବିଶ୍ୱବିଦ୍ୟାଳୟର ସିନେଟରେ ଏକ ପ୍ରସ୍ତାବ ଦେଇଥିଲେ । ସେଠାରେ ଅଣୁ କାର୍ଯ୍ୟାରମ୍ଭର ଆୟୋଜନ ନ ଦେଖି, ତାର ଦୁଇବର୍ଷ ପରେ ସମ୍ବଲପୁର ଗଙ୍ଗାଧର ମେହେର କଲେଜରେ "ଓଡ଼ିଆ ଜ୍ଞାନକୋଷ ସମିତି'' ଆରମ୍ଭ କଲେ । ଏହି ସମିତି ପକ୍ଷରୁ ଓଡ଼ିଆ ଜ୍ଞାନକୋଷର 'ଅ' ଅକ୍ଷର ସମ୍ବଳିତ ଖଣ୍ଡ ପ୍ରସ୍ତୁତ କରିବାକୁ ଓଡ଼ିଶାର ଲେଖକ, ସାହିତ୍ୟିକ, ଅଧ୍ୟାପକ ଆଦି ପଣ୍ଡିତ ମଣ୍ଡଳୀର ସାହାଯ୍ୟ ଲୋଡ଼ିଲେ । ଅନେକଙ୍କଠାରେ ଜ୍ଞାନକୋଷ ବିଷୟରେ ସ୍ପଷ୍ଟ ଧାରଣା ନ ଥିଲା । 'ଜ୍ଞାନକୋଷ'ର ବିଶାଳତା ଓ ବ୍ୟାପ୍ତି ବିଷୟରେ ସାଧାରଣରେ ଧାରଣା ନ ଥିବାରୁ ଏପରି ଏକ ବିଷ୍ଟ କାର୍ଯ୍ୟ ଲାଗି ଆବଶ୍ୟକ ପୃଷ୍ଠପୋଷକତା ମିଳିବା ସମ୍ଭବ ନ ଥିଲା । ଉପଯୁକ୍ତ କ୍ଷେତ୍ର ପ୍ରସ୍ତୁତ କରିବାକୁ ଓ ଜ୍ଞାନକୋଷ ବିଷୟରେ ସାଧାରଣଙ୍କ ମନରେ ଏକ ନିର୍ଦ୍ଦିଷ୍ଟ ଧାରଣା ଦେବାକୁ ସମୁଦାୟ 'ଅ-ଖଣ୍ଡ' ସଙ୍କଳନ ପାଇଁ ଅପେକ୍ଷା ନ କରି 'ଅ' ଅକ୍ଷର ବିଶିଷ୍ଟ ପଞ୍ଚାବନ ଗୋଟି ଶବ୍ଦକୁ ନେଇ ନମୁନାଖଣ୍ଡ ପ୍ରକାଶ କରିଥିଲେ । ଏଥିରେ ଏକ ଦୀର୍ଘ ଭୂମିକାରେ, ଏଇ ନମୁନା ଖଣ୍ଡ ଯେ ଏକ ବିରାଟ ପ୍ରଚେଷ୍ଟାର ଅଗ୍ରୀମାରମ୍ଭ ତାର ଅତି ସୁନ୍ଦର ବିଶ୍ଳେଷଣ କରିଥିଲେ । ଡା. ମାନସିଂଙ୍କ ଏହି ଉଦ୍ୟମ ଫଳରେ ବିଶ୍ୱବିଦ୍ୟାଳୟ, ସରକାର ଓ ସାଧାରଣଙ୍କ ଦୃଷ୍ଟି ଆକୃଷ୍ଟ ହୋଇଛି । ଆମ ଜ୍ଞାନକୋଷ ସଙ୍କଳନ ଇତିହାସରେ ଏହି ଉଦ୍‌ଯୋଗ-ପର୍ବର ମହତ୍ତ୍ୱ ଚିରନ୍ତନ ମୂଲ୍ୟରେ ଗୃହୀତ ହେବ ।

ଅଧିକ ଉନ୍ନତ ଭାରତୀୟ ଭାଷା ଓ ସାହିତ୍ୟ କ୍ଷେତ୍ରରେ ଜ୍ଞାନକୋଷ ସଙ୍କଳନ କି ସ୍ତରରେ ଅଛି ତାର କିଞ୍ଚିତ ସୂଚନା ପୂର୍ବରୁ ଦିଆଯାଇଛି । ସେଇ ତୁଳନାରେ ଦେଖିଲେ ନମୁନାଖଣ୍ଡ ଯେଉଁ କଳ୍ପିତ ଜ୍ଞାନକୋଷର ଧାରଣା ଦେଉଛି—ତାହା ଯେ ଆଦର୍ଶସ୍ଥାନୀୟ ହେବ ଏଥିରେ ସନ୍ଦେହ ନାହିଁ । ପୃଥିବୀର ଉନ୍ନତ ଦେଶମାନଙ୍କରେ ସଙ୍କଳନର ଯେଉଁ ଅଗ୍ରଗତି ହୋଇଛି, ଆମ ଦେଶରେ ମୂଳରୁ ତାହା କଳ୍ପନା କରିବା ସମ୍ଭବ ନୁହେଁ । ତେବେ ଏଇ ସବୁ ପ୍ରଗତିଶୀଳ ଦେଶମାନଙ୍କରେ ଜ୍ଞାନକୋଷ ସଙ୍କଳନ ଇତିହାସର ଅଗ୍ରଗତିକୁ ଆଦର୍ଶରେ ରଖି ଉପଯୁକ୍ତ ଆୟୋଜନ ଓ ପରିକଳ୍ପନା ଅନୁସାରେ ଗଢ

କଲେ ଆମ କାର୍ଯ୍ୟଧାରା ଦ୍ରୁତ ହେବ; ସମ୍ଭାବନାର ଶିଖ ଉଜ୍ଜ୍ୱଳ ହେବ—ଏଥିରେ ସନ୍ଦେହ ନାହିଁ ।

*

* *

## ଓଡ଼ିଶାରେ ଜ୍ଞାନକୋଷ ସଙ୍କଳନର ଅନୁକୂଳ ପରିବେଶ

ପୂର୍ବେ ଜଗତର ଜ୍ଞାନପିପାସା ଅତି ଅଳ୍ପ ଲୋକଙ୍କ ଭିତରେ ସୀମିତ ଥିଲା । ସେମାନେ ତାହା ବିଦେଶୀ ଭାଷା ମାଧ୍ୟମରେ ଚରିତାର୍ଥ କରୁଥିଲେ । ବିଦେଶୀଭାଷାର ଜ୍ଞାନକୋଷରେ ଆମ ଜାତୀୟ ଦୃଷ୍ଟିକୋଣର ସ୍ୱାକ୍ଷର ନ ଥିଲା । ବିଶ୍ୱମାନବ ଗୋଷ୍ଠୀରେ ଆମର ସ୍ୱତନ୍ତ୍ର ପରିଚୟ ନ ଥିଲା । ଅନ୍ୟ ଜାତିର ଗୌରବ କାହାଣୀ ପଢ଼ି ପଢ଼ି, ଆମ ମନରେ ଏକ ନ୍ୟୂନଭାବ ଉଦୟ ହେଉଥିଲା । ଆଜି ଅବସ୍ଥା ବଦଳିଛି । ଦେଶ ସ୍ୱାଧୀନ ହୋଇଛି । ଦ୍ରୁତଗତିରେ ଶିକ୍ଷା ବିସ୍ତାର ଘଟୁଛି । ସାଂସ୍କୃତିକ ପୁନର୍ଗଠନ ଓ ବୈଷୟିକ ଉନ୍ନତି ଲାଗି ଏକ ଜାଗ୍ରତ ଚେତନା ଉଦ୍ଭବ ହେଉଛି । ସାଧାରଣ ଜନର ଜ୍ଞାନପିପାସା ବଢ଼ୁଛି । ଆମର ଶିଳ୍ପୀ କଳାକାର, ସାହିତ୍ୟିକ, ଶିକ୍ଷକ, ଛାତ୍ର ଓ ଶ୍ରମିକ – ମାତୃଭାଷାନ୍ୟଧାରା ପାନ ସହିତ ଯେଉଁ ଭାଷାରେ ଭାବ ପ୍ରକାଶ କରିବାକୁ ଶିଖନ୍ତି ଓ ଯେଉଁ-ଭାବରେ ଅନୁଭବିତ ହୁଅନ୍ତି, ସେଇ ଭାଷାରେ ଓ ସେଇ ଭାବରେ ନିଜର ଜ୍ଞାନପିପାସା ଚରିତାର୍ଥ କରିବାକୁ ଚାହୁଁଛନ୍ତି । ଏ ପରିବେଶ ଓଡ଼ିଆ ଜ୍ଞାନକୋଷ ସଙ୍କଳନ ଲାଗି ଅତି ଅନୁକୂଳ ।

### ବିଶ୍ୱମାନବର ଜ୍ଞାନଧାରାର ଆହରଣ

ଏହି ସମସ୍ତ ଅନୁକୂଳ ପରିବେଶ ସତ୍ତ୍ୱେ ଜ୍ଞାନକୋଷ ସଙ୍କଳୟିତାଙ୍କୁ ଅନେକ ପ୍ରତିକୂଳ ପରିବେଶର ସମ୍ମୁଖୀନ ହେବାକୁ ପଡ଼ିବ । ପ୍ରଥମତଃ

ବିଶ୍ୱମାନବିକ ଭାବଧାରାର ଆହରଣ । ଏ ଦିଗରେ ଆମର ଦୃଷ୍ଟିକୋଣରେ ସ୍ୱାତନ୍ତ୍ର୍ୟ ରକ୍ଷାକରିବା ଉଚିତ । ନିଜର ଆଦର୍ଶରେ ଦୃଢ଼ ହେବା ପୂର୍ବରୁ ଅନ୍ୟ ଆଦର୍ଶର ଅନୁକରଣରେ ଭାସିଯିବା ଅସମ୍ଭବ ନୁହେଁ । ଏବେ ପୃଥିବୀର ବିଭିନ୍ନ ଦେଶ ବିଷୟରେ ତଥ୍ୟ ଆହରଣରେ ବ୍ରିଟାନିକାର ଦୃଷ୍ଟିକୋଣ ଆମକୁ ପ୍ରଭାବିତ କରିବା ସମ୍ଭବ । ଏଇ ପ୍ରଭାବରେ ଆମର ମୌଳିକତାରେ ନିଶ୍ଚୟ ହାନି ଘଟିବ । ତା'ଛଡ଼ା ଇଂରେଜୀ ଜ୍ଞାନକୋଷର ଦୃଷ୍ଟିକୋଣର ଦୁର୍ବଳତା ଓ ସଂକୀର୍ଣ୍ଣତା ଆମ ଜ୍ଞାନକୋଷକୁ ଦୁଷ୍ଟ ଓ ବିକଳାଙ୍ଗ କରିଦେବ । ଏହି ପ୍ରବନ୍ଧର ପୂର୍ବବର୍ତ୍ତୀ ଆଲୋଚନାରୁ ସ୍ପଷ୍ଟ ହେବ ବ୍ରିଟାନିକା ବିଷୟରେ ଆମର ଧାରଣା ସତ୍ୟ ନୁହେଁ । ବ୍ରିଟାନିକା ପୃଥିବୀର ବୃହତ୍ତମ ବା ପ୍ରାମାଣିକ ଜ୍ଞାନକୋଷ ନୁହେଁ । ଏପରି କି ବ୍ରିଟାନିକାଠାରୁ ଆମେରିକାନା ଉତ୍କୃଷ୍ଟ । ଏହାର ବ୍ୟାବହାରିକ ସୁବିଧା ଅନେକ ବେଶୀ । ଆକୃତିରେ ବ୍ରିଟାନିକାଠାରୁ ସ୍ପେନ୍, ଜର୍ମାନ୍, ଫ୍ରାନ୍ସ, ଜାପାନ ଓ ଆମେରିକାର ଜ୍ଞାନକୋଷ ଯଥେଷ୍ଟ ବଡ଼ । ଏହାବ୍ୟତୀତ ତଥ୍ୟ ଆହରଣ ଓ ପରିବେଷଣରେ ବ୍ରିଟାନିକା ରକ୍ଷଣଶୀଳ । କେବଳ ବ୍ରିଟାନିକା ନୁହେଁ, ଅନ୍ୟ ପାଶ୍ଚାତ୍ୟ ଜ୍ଞାନକୋଷଗୁଡ଼ିକ ମଧ୍ୟ ପାଶ୍ଚାତ୍ୟ ଦେଶ ଛଡ଼ା ପୃଥିବୀର ଅନ୍ୟ ଦେଶର ସଂସ୍କୃତି ଓ ସାହିତ୍ୟ ପ୍ରତି ପ୍ରାୟତଃ ଅବିଚାର କରିଥାନ୍ତି । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଏ ଅବିଚାରର ପ୍ରତିବାଦ ପାଶ୍ଚାତ୍ୟ ଜଗତରେ ବି କରାଯାଉଛି । ନୂତନ କଳ୍ପିତ ଫରାସୀ ଜ୍ଞାନକୋଷ "ଅଁସିକ୍ଲୋପେଦି ଦ୍ୟୁ ଲ ପ୍ଲେଇଆଦ୍"ର ଡିରେକ୍ଟର ଏହାର ତୀବ୍ର ପ୍ରତିବାଦ କରିଛନ୍ତି ଓ ନିଜ ସଙ୍କଳିତ ଜ୍ଞାନକୋଷରେ ଭର୍ଜିଲ, ହୋମାର ଆଦିଙ୍କ ସହିତ ସମକାଳୀନ ଓ ସମଶ୍ରେଣୀୟ ପ୍ରାଚ୍ୟ କବିମାନଙ୍କୁ ସମାନ ସ୍ଥାନ ଦେଇଛନ୍ତି । ଆମ ଜ୍ଞାନକୋଷରେ ଏହି ସମଦୃଷ୍ଟି ପ୍ରକାଶ ପାଇବା ବାଞ୍ଛନୀୟ । ଅନ୍ୟ ଦେଶସବୁ ବିଷୟରେ ଯଥାସମ୍ଭବ ମୌଳିକସୂତ୍ରରୁ ତଥ୍ୟ ଆହରଣ ଦ୍ୱାରା ଏହା ସମ୍ଭବ ହେବ ।

## ଜାତୀୟ ସଂସ୍କୃତିର ନବୀଭୂତ ପ୍ରକାଶ

ଦ୍ୱିତୀୟତଃ ସ୍ୱଦେଶ ଓ ସ୍ୱଜାତିର ପରିଚୟ ପ୍ରସଙ୍ଗ । ଆମ ଜ୍ଞାନକୋଷରେ ଆମର ଜାତୀୟ ଇତିହାସ, କୃଷ୍ଟି, ପରମ୍ପରା, ଭୂଗୋଳ ଓ ଆର୍ଥିକ-ସ୍ଥିତି ବିଷୟକ ତଥ୍ୟ ବିଶଦରୂପେ ସଙ୍କଳିତ ହେବା ଆବଶ୍ୟକ । ଏହି ଲକ୍ଷ୍ୟ ସାଧିତ ନ ହେଲେ ଆମ ଜ୍ଞାନକୋଷର

ଜାତୀୟ ମର୍ଯ୍ୟାଦା ହାନି ଘଟିବ । ଜାତୀୟ ମର୍ଯ୍ୟାଦା ପ୍ରତିଷ୍ଠା ଲାଗି ପୃଥିବୀର ପ୍ରତ୍ୟେକ ବିଶିଷ୍ଟ ଜ୍ଞାନକୋଷରେ ସ୍ୱତନ୍ତ୍ର ପ୍ରଚେଷ୍ଟା ହୋଇଛି । ଇଟାଲୀର ଜାତୀୟ ଜ୍ଞାନକୋଷରେ ସେ ଦେଶର ଗୃହଶିଳ୍ପକୁ ବିଶେଷ ସ୍ଥାନ ଦିଆ ହୋଇଛି । ସ୍ପେନୀସ୍ ଏସ୍‌ପାସାରେ ସ୍ପେନ ବିଷୟକ ସମସ୍ତ ତଥ୍ୟ ଏକ ସ୍ୱତନ୍ତ୍ର ଭାଗରେ ସଙ୍କଳିତ ହୋଇଛି । ଅମେରିକାନା, ବ୍ରିଟାନିକା ଆଦି ଅନ୍ୟ ଜ୍ଞାନକୋଷରେ ସ୍ୱଦେଶର ଇତିହାସ, ସାହିତ୍ୟ ଓ ଧର୍ମାଦି ବିଷୟରେ ଅଧିକ ସ୍ଥାନ ଦିଆଯାଇଛି । ସେହିପରି ଓଡ଼ିଆ ଜ୍ଞାନକୋଷ ସଙ୍କଳିତ ହେଲେ, ସେଥିରେ ଓଡ଼ିଆ ସଂସ୍କୃତି ଏକ ନବୀନ ରୂପରେ ଆତ୍ମପ୍ରକାଶ କରିବ । ଓଡ଼ିଆ ସାହିତ୍ୟର ଇତିହାସ ଲେଖା ହୋଇନାହିଁ । ଜାତୀୟ ଇତିହାସ କ୍ଷୀଣାବୟବ ହୋଇ ରହିଛି । ସାମାଜିକ ଇତିହାସ, ଧର୍ମ ଓ ଦର୍ଶନର ଇତିହାସ କଥା ଅତି ଅଳ୍ପ ଲୋକ ଚିନ୍ତା କରନ୍ତି । ଓଡ଼ିଶାର ଆର୍ଥିକ, ବାଣିଜ୍ୟିକ, ସାଂସ୍କୃତିକ ଭୂଗୋଳ, ଜନସମାଜ, ଜାତିତତ୍ତ୍ୱ, ସାମାଜିକ ଚଳଣି ଓ ପରମ୍ପରା, ଲୋକବିଶ୍ୱାସ, କଳା ଓ ସାହିତ୍ୟର କ୍ୱଚିତ୍ ଅନୁସନ୍ଧାନ ହୋଇଛି । ଓଡ଼ିଆ ଜ୍ଞାନକୋଷରେ ଏସବୁ ବିଷୟରେ ବିଶଦ ତଥ୍ୟ ଦେବାକୁ ହେବ । ଏହି ଦିଗରୁ ଓଡ଼ିଶାହିଁ ଓଡ଼ିଆ ଜ୍ଞାନ-କୋଷର ପ୍ରଧାନ ସମସ୍ୟା । ଏଥିଲାଗି ହୁଏତ ଏକ ସ୍ୱତନ୍ତ୍ର ଗବେଷଣା ବିଭାଗର କାର୍ଯ୍ୟ ଆବଶ୍ୟକ ହେବ ।

## ଆନୁଷ୍ଠାନିକ ସଂଗଠନ

ତୃତୀୟତଃ ଜ୍ଞାନକୋଷ ସଙ୍କଳନ ଲାଗି ଏକ ବିସ୍ତୃତ ଅନୁଷ୍ଠାନ ଲୋଡ଼ା । ଆଜିକାଲି ପ୍ରତ୍ୟେକ ବିଶିଷ୍ଟ ଜ୍ଞାନକୋଷର ସ୍ଥାୟୀ ସମ୍ପାଦନା ଅନୁଷ୍ଠାନ ଅଛି । ନୂତନ ସଂସ୍କରଣ ବା ସଙ୍କଳନବେଳେ ଏହି ଅନୁଷ୍ଠାନକୁ ଯଥେଷ୍ଟ ପରିବର୍ଦ୍ଧିତ କରାଯାଉଛି । ପୁଣି ପ୍ରାରମ୍ଭିକ ସଙ୍କଳନ ବେଳେ ବହୁ କର୍ମୀଙ୍କର ସମବେତ ଉଦ୍ୟମ ଆବଶ୍ୟକ । ଜାପାନୀ ଜ୍ଞାନକୋଷ ସଙ୍କଳନରେ ତିନିହଜାର ପଣ୍ଡିତ ସହଯୋଗ କରିଥିଲେ ଏମାନଙ୍କୁ ଆବଶ୍ୟକ ତଥ୍ୟ ଆହରଣ କରିବାକୁ ୨୫ ବର୍ଷ ଲାଗିଥିଲା । ବିଶେଷଜ୍ଞ ପଣ୍ଡିତଙ୍କୁ ବାଦ୍ ଦେଲେ ବି ଏବେ ଓଡ଼ିଶାରେ ସାଧାରଣ ଲୋକଙ୍କ ସଂଖ୍ୟା ଶହେ ହେବ କି ନାହିଁ ସନ୍ଦେହ । ଏମାନଙ୍କର ପୁଣି ସ୍ୱତନ୍ତ୍ର ଜୀବିକା ଅଛି । ଓଡ଼ିଆ ଜ୍ଞାନକୋଷର କ୍ଷୀଣାବୟବ ସଂପାଦନା ମଣ୍ଡଳୀ ଯଦି ଏମାନଙ୍କ

ଅବସରକୁ ପୂର୍ଣ୍ଣକରି ଜ୍ଞାନକୋଷ ସଂକଳନ କରିବାକୁ ବସନ୍ତି, ତେବେ ଅର୍ଦ୍ଧଶତାବ୍ଦୀରେ ନିଜ ଲକ୍ଷ୍ୟ ସ୍ଥଳରେ ପହଞ୍ଚି ପାରିବେ କି ନାହିଁ ସନ୍ଦେହ । ଏତେକାଳ ଅପେକ୍ଷା କରିବାକୁ ଆମର ଧୈର୍ଯ୍ୟ ରହିବ କି ? ତେଣୁ ସଂଗ୍ରହ ଓ ସଂକଳନରେ ଅନେକ କାର୍ଯ୍ୟ ସମ୍ପାଦକ ମଣ୍ଡଳୀକୁ ଅତି ଦ୍ରୁତଗତିରେ କରିବାକୁ ହେବ । ଏଥିଲାଗି ବହୁ ବିଜ୍ଞାନୀ ସମ୍ପାଦକ ଓ ସହ ସମ୍ପାଦକଙ୍କ ନିରବଚ୍ଛିନ୍ନ ସାଧନା ଲୋଡ଼ା । ଏହା ବ୍ୟତୀତ ଯଥାର୍ଥ ଶକ୍ତି ସମ୍ପନ୍ନ ଯେଉଁ ଲେଖକମାନେ ସାମୟିକ ଭାବରେ ନିଜର ସମସ୍ତ ସମୟ ଦେଇ ପାରିବେ, ସେମାନଙ୍କ ସେବା ମଧ୍ୟ ଗ୍ରହଣ କରାଯିବା ଉଚିତ । ଏକ ନିର୍ଦ୍ଦିଷ୍ଟ ସମୟରେ ଓଡ଼ିଆରେ ଏକ ଆଦର୍ଶସ୍ଥାନୀୟ ଜ୍ଞାନକୋଷ ସଂକଳନ କରିବାକୁ ହେଲେ, ବ୍ୟାପକ ଦୃଷ୍ଟିରେ ଅନୁଷ୍ଠାନ ଗଢ଼ିବାକୁ ହେବ । କେତେକ ସ୍ଥଳରେ ଏ ଅନୁଷ୍ଠାନର କର୍ମୀମାନଙ୍କୁ ବିଶେଷ ଟ୍ରେନିଂ ଦେଇ ତିଆରି କରିବାକୁ ହେବ । ଏପରି ଏକ କାର୍ଯ୍ୟରେ ବ୍ୟୟକୁଣ୍ଠା ପ୍ରଦର୍ଶନ ହେବା ଉଚିତ ନୁହେଁ । ପ୍ରାଥମିକ ସ୍ତରରେ ଆମେ ହୁଏତ — '[illegible]' ବା ଜର୍ମାନୀ '[illegible]'ର ପରିକଳ୍ପନା କରି ପାରିବା ନାହିଁ । ତଥାପି ଆମର ପ୍ରୟୋଜନ-ବୋଧକୁ ଗୁରୁତ୍ୱ ସମ୍ପୂର୍ଣ୍ଣ ଅଭାବ ହେବନାହିଁ । ଏହି ଦୃଷ୍ଟିରେ ଆମ ଜ୍ଞାନ-କୋଷର ଅଭିମୁଖ୍ୟ ଓ ଆଦର୍ଶ ସ୍ଥିର ହେବା ଉଚିତ ।

## ଓଡ଼ିଆ ଜ୍ଞାନକୋଷର ଆଭିମୁଖ୍ୟ

ଜ୍ଞାନର ସାଧାରଣୀକରଣ ହିଁ ଆଧୁନିକ ଜ୍ଞାନକୋଷର ଆଦର୍ଶ । ଏହା ଏକ ଉନ୍ନତ କଳା । ଅନେକ ବିଶିଷ୍ଟ ପ୍ରାଚୀନ ଜ୍ଞାନକୋଷ ପକ୍ଷରେ ଏହି କଳା ଆହରଣ କରିବାକୁ ଦୀର୍ଘକାଳ ବିତିଛି । ଆମକୁ ଆରମ୍ଭରୁ ଏଥିପ୍ରତି ଦୃଷ୍ଟି ଦେବାକୁ ହେବ । ସାଧାରଣ ପାଠକଙ୍କ ନିକଟକୁ ଜ୍ଞାନର ମନ୍ଦାକିନୀଧାରା ବୁହାଇ ନେବା ହିଁ ଓଡ଼ିଆ ଜ୍ଞାନକୋଷର ଆଦର୍ଶ ହେବା ଉଚିତ । କେତେକ ସ୍ତରରେ ଏବେ ଯୁକ୍ତି ହେଉଛି, ଜ୍ଞାନକୋଷ ସଙ୍କଳନ ବିରାଟ କାର୍ଯ୍ୟ । ପ୍ରଥମେ ପ୍ରକୀର୍ଣ୍ଣ କୋଷ ସଙ୍କଳନର ଉଦ୍ୟମ ଲୋଡ଼ା । କିନ୍ତୁ ପ୍ରକୀର୍ଣ୍ଣ କୋଷ ଅର୍ଥ ଯଦି ବିଶେଷ ଧରଣର ଜ୍ଞାନକୋଷ — ଅର୍ଥାତ୍ ଧର୍ମ, ଦର୍ଶନ, ବିଜ୍ଞାନ, ସାହିତ୍ୟ ଆଦି ଗୋଟିଏ ଗୋଟିଏ ବିଷୟରେ ଜ୍ଞାନକୋଷ ହୁଏ, ତେବେ ସେଗୁଡ଼ିକ ବିଶେଷଜ୍ଞ ପାଠକଙ୍କ ପାଇଁ ସଙ୍କଳିତ ହେବ । ଓଡ଼ିଶାରେ ବର୍ତ୍ତମାନ ବିଶେଷଜ୍ଞ ପାଠକଙ୍କ

ସଂଖ୍ୟା ଅଳ୍ପ । ଅଥଚ କେବଳ ଏଇମାନଙ୍କ ଜ୍ଞାନପିପାସା ଚରିତାର୍ଥ କରିବାକୁ ଗଲେ, ବହୁ ସାଧାରଣ ପାଠକଙ୍କ ପ୍ରତି ଯଥାର୍ଥ ଦୃଷ୍ଟି ଦେଇ ହେବନାହିଁ । ପ୍ରଥମେ ପ୍ରକୀର୍ଣ୍ଣକୋଷ ସଂକଳିତ ହୋଇ, ପରେ ସାଧାରଣ ଜ୍ଞାନକୋଷ ସଂକଳିତ ହେବାର ଦୃଷ୍ଟାନ୍ତ ମଧ୍ୟ ଅନ୍ୟାନ୍ୟ ବିରଳ । ସବୁ ଦେଶରେ ସାଧାରଣ ଜ୍ଞାନକୋଷମାନ ସଙ୍କଳିତ ହେବାର ବହୁ ପରେ ବିଶେଷଜ୍ଞ ପାଠକଙ୍କ ଲାଗି ବିଶେଷ ଧରଣର ଜ୍ଞାନକୋଷମାନ ସଙ୍କଳିତ ହୋଇଛି । ଓଡ଼ିଶାରେ ଏହାର ବ୍ୟତିକ୍ରମ ଘଟାଇବାର କୌଣସି କାରଣ ନାହିଁ । ଅବଶ୍ୟ ଓଡ଼ିଆ ଜ୍ଞାନକୋଷରେ ଓଡ଼ିଆ ପାଠକଙ୍କ ବିଶେଷ ରୁଚି ପ୍ରତି ସମ୍ମାନ ଦେବା ଉଚିତ । ଯେଉଁସବୁ ବିଷୟ ଜାଣିବା ପାଇଁ ଆମ ପାଠକଙ୍କ ମଧ୍ୟରେ ଅଧିକ ଆଗ୍ରହ ଦେଖାଦେବା ସମ୍ଭବ, ସେ ବିଷୟରେ ବିଶଦ ଆଲୋଚନା ପ୍ରୟୋଜନ । ଏଥିଲାଗି ଆମକୁ ବିଶେଷ ଯତ୍ନର ସହିତ ଓଡ଼ିଶା ଖଣ୍ଡ ସଙ୍କଳନ କରିବାକୁ ହେବ । ଭାରତବର୍ଷ ତଥା ବୃହତ୍ତର ଭାରତର (ଦକ୍ଷିଣ ପୂର୍ବ ଏସିଆ) ଯେଉଁ ଅଂଶ ସହିତ ଆମର ଅତୀତ ସଂପର୍କ ନିବିଡ଼ ଥିଲା ସେ ସମ୍ବନ୍ଧରେ ବହୁ ମୌଳିକ ଅନୁସନ୍ଧାନ କରିବାକୁ ହେବ । ପାଠକଙ୍କ ରୁଚିକୁ ସମ୍ମାନ ଦେବା ସଙ୍ଗେ ସଙ୍ଗେ ସେମାନଙ୍କ ରୁଚିକୁ ସମୁନ୍ନତ କରିବାର ପ୍ରୟାସ ମଧ୍ୟ ପ୍ରୟୋଜନ । ବର୍ତ୍ତମାନ ଓଡ଼ିଶାର ସାଂସ୍କୃତିକ ବିକାଶ ଓ ବୈଷୟିକ ଉନ୍ନତି ଲାଗି ଯେଉଁ ସବୁ ବିଷୟରେ ଆମର ଅଧିକ ଜ୍ଞାନ ଲୋଡ଼ା—ତାହା ଆମ ଜ୍ଞାନକୋଷରୁ ମିଳିବା ଉଚିତ ।

## ସାହିତ୍ୟିକ ମୂଲ୍ୟ

ପରିଶେଷରେ, ଓଡ଼ିଆ ଜ୍ଞାନକୋଷ ଯେପରି ଅଧିକ ସ୍ଥାୟୀ ମୂଲ୍ୟରେ ଗୃହୀତ ହୁଏ, ତାହା ଦେଖିବାକୁ ହେବ । ଅନେକବାରେ ଜ୍ଞାନକୋଷକୁ ବୃହତ୍ତର ସମ୍ବାଦପତ୍ରରୂପେ କଳ୍ପନା କରାଯାଇଥାଏ । କାରଣ ସେଗୁଡ଼ିକ ପ୍ରତିବର୍ଷ ବାରମ୍ବାର ସଙ୍କଳିତ ହୁଏ । ତେଣୁ ଯୋଜନାରେ ତ୍ରୁଟି ଥିଲେ ତାହା ସହଜରେ ନିରାକୃତ ହୁଏ । ତଥ୍ୟରେ ଭୁଲ ଥିଲେ ସଂଶୋଧିତ ହୁଏ । ଏ ସବୁ ସତ୍ତ୍ୱେ ଗୋଟିଏ ଜ୍ଞାନକୋଷ ପୁରୁଣା ହୋଇଗଲେ, ନୂତନ ଜ୍ଞାନକୋଷ ତାହାର ସ୍ଥାନ ପୂରଣ କରେ । ଆମ ଦେଶରେ ଏପରି ଅବସ୍ଥା ନିକଟ ଭବିଷ୍ୟତରେ ଆସିବା ସମ୍ଭବ ନୁହେଁ ।

ଥରେ ଗୋଟିଏ ସଂସ୍କରଣ ପ୍ରକାଶିତ ହେଲେ, ଦ୍ୱିତୀୟ ସଂସ୍କରଣ ଲାଗି ହୁଏତ ଦୀର୍ଘକାଳ ଅପେକ୍ଷା କରିବାକୁ ହେବ । ଏହି ସମସ୍ୟା ମଧ୍ୟ ଫରାସୀ ଜ୍ଞାନକୋଷ କ୍ଷେତ୍ରରେ ଦେଖା ଦେଇଥାଏ । ସେଥିଲାଗି ସେ ଦେଶରେ ପ୍ରତ୍ୟେକ ଜ୍ଞାନକୋଷର ପ୍ରତି ସଂସ୍କରଣ ଅତି ଯତ୍ନର ସହିତ ସଙ୍କଳିତ ହୁଏ । କେବଳ ବିବରଣୀ ସଂଗ୍ରହ ମାତ୍ର ନ ହୋଇ ଏହା ଯେପରି ଉଚ୍ଚ ସାହିତ୍ୟିକ ମୂଲ୍ୟରେ ଗୃହୀତ ହେବ ସେଥିପ୍ରତି ଦୃଷ୍ଟି ଦିଆଯାଏ । ପ୍ରବନ୍ଧମାନ ବିଶେଷଜ୍ଞଙ୍କଠାରୁ ସଂଗୃହୀତ ହୋଇ ବିଶିଷ୍ଟ ଗଦ୍ୟ ଲେଖକ ଓ ପ୍ରବନ୍ଧକଙ୍କ ଦ୍ୱାରା ଆବଶ୍ୟକ ମତେ ବାରମ୍ବାର ସଂଶୋଧିତ ହୁଏ । ଫଳରେ ସର୍ବଦା ଫରାସୀ ଗଦ୍ୟର ଉନ୍ନତ ଆଦର୍ଶ ରକ୍ଷା କରିବା ସମ୍ଭବ ହୁଏ । ଆମର ଏ ରୀତି ଅବଲମ୍ବିତ ହେବା ଉଚିତ । ଅଳ୍ପକାଳ ଆମ ପତ୍ର ପତ୍ରିକାରେ ପ୍ରକାଶିତ ଅନେକ ଉଚ୍ଚକୋଟିର ପ୍ରବନ୍ଧ ଅବାଞ୍ଛନୀୟ ଭାଷାଗତ ଅପସର୍ଜନା ଘେନି ଆତ୍ମପ୍ରକାଶ କରୁଛି । ଜ୍ଞାନକୋଷରେ ଯେପରି ଏଭଳି ତ୍ରୁଟି ନ ରହେ, ସେଥିଲାଗି ବିଶେଷ ଧ୍ୟାନ ଦେବା ଆବଶ୍ୟକ ।

ଓଡ଼ିଆ ଜ୍ଞାନକୋଷରେ ବିଜ୍ଞାନ, ଦର୍ଶନ, ନାନା ପ୍ରକାର ଯନ୍ତ୍ର-ଶିଳ୍ପ ଓ ବୈଷୟିକ ପ୍ରସଙ୍ଗରେ ପ୍ରବନ୍ଧମାନ ଲେଖା ହେବ । ଏଥିଲାଗି ଉପଯୁକ୍ତ ପରିଭାଷା ସୃଷ୍ଟି କରିବାକୁ ହେବ । ପୁଣି ଅନେକ ବିଦେଶୀ ଭାବ-ଧାରାକୁ ଜ୍ଞାନକୋଷ ମାଧ୍ୟମରେ ଓଡ଼ିଆଭାଷାର ସମ୍ପଦଭୁକ୍ତ କରିବାକୁ ହେବ । ଏ ସବୁ କ୍ଷେତ୍ରରେ ଆହରଣରେ ଯଥାର୍ଥ ସଂଜ୍ଞା ପ୍ରକାଶ ନ ପାଇଲେ ନାନା ବିଦେଶୀ ଭାବଧାରା, ଦାର୍ଶନିକ ଓ ବୈଜ୍ଞାନିକ ଜ୍ଞାନ ଓଡ଼ିଆ ପାଠକଙ୍କଠାରେ ନିରର୍ଥକ ବାକ୍ୟାବଳୀ ରୂପେ ପ୍ରତୀତ ହେବ । ଜ୍ଞାନକୋଷର ଉଦ୍ଦେଶ୍ୟ ବ୍ୟର୍ଥ ହେବ । ତାହା ଅଭୂତ ହେବ ନାହିଁ । ତେଣୁ ଏହାର ଆହରଣ ଅଂଶ ଯେପରି ଅଙ୍ଗୀଭୂତ ପରିପାଟୀରେ ସୁନ୍ଦର ହୁଏ ସେଥିପ୍ରତି ବିଶେଷ ଶ୍ରମ ସ୍ୱୀକାର କରିବାକୁ ପଡ଼ିବ । ଏହି ସମସ୍ତ ଦିଗ ପ୍ରତି ଯଥାର୍ଥ ଧ୍ୟାନ ଦେଲେ ଓଡ଼ିଆ ଜ୍ଞାନକୋଷର ପ୍ରତ୍ୟେକ ପଂକ୍ତିରେ ରୁଚିମନ୍ତ, ପ୍ରକାଶକ୍ଷମ ଓ କଳାକୁଶଳ ଓଡ଼ିଆ ଗଦ୍ୟ ଶୈଳୀର ପ୍ରାଣ-ପ୍ରକାଶ ଘଟିବ । କି ତଥ୍ୟ ଆହରଣ, କି ଭାବ ପ୍ରକାଶ, କି ଭାଷା ବିନ୍ୟାସ ସବୁଥିରେ ଏହା ଆଦର୍ଶସ୍ଥାନୀୟ ହେବା ଉଚିତ । ତାହା ନ ହେଲେ

ପ୍ରଥମରୁ ଯଦି ବଙ୍ଗଳାଙ୍କ ଓ ନ୍ୟୁଟିପୂର୍ଣ୍ଣ ହୋଇ ଓଡ଼ିଆ ଜ୍ଞାନକୋଷ ଅସ୍ପ-ପ୍ରକାଶ କରେ ତେବେ ଆମର ଶ୍ରମ ଓ ଜନସାଧାରଣଙ୍କ ଅଗ୍ରହ ବ୍ୟର୍ଥତାରେ ପରିଣତ ହୋଇଯିବ ।

## ଜାତୀୟ ପୁନର୍ଗଠନର ଭୂମିକା

ଅଜି ବିଂଶ ଶତକର ଦ୍ୱିତୀୟାର୍ଦ୍ଧରେ ଦେଶ ଦେଶ ମଧ୍ୟରେ ଜ୍ଞାନବିଜ୍ଞାନର ଆଦାନ ପ୍ରଦାନର ଧାରା ବିସ୍ତୃତ ଓ ବେଗବାନ ହୋଇଛି । ଗୋଟିଏ ଦେଶର ଅଭିଜ୍ଞତା ଅନ୍ୟ ଦେଶର ସାଧନାକୁ ସହଜରେ ସଫଳ କରିପାରୁଛି । ବିଶ୍ୱର ବିଖ୍ୟାତ ଜ୍ଞାନକୋଷଗୁଡ଼ିକର ଆଦର୍ଶ ଓ ଅନୁଭୂତି ଆମ ଭାଷାରେ ଏକ ଶ୍ରେଷ୍ଠ ଓ ଆଦର୍ଶସ୍ଥାନୀୟ ଜ୍ଞାନକୋଷ ସଙ୍କଳନ ଲାଗି ବହୁ ଭାବରେ ସାହାଯ୍ୟ କରିପାରିବ । ଆମେ ବର୍ତ୍ତମାନ ଆଧୁନିକତମ ଦୃଷ୍ଟିକୋଣରୁ ଏ ଦିଗରେ ଚିନ୍ତା କରିବା । ଆମର ଜାତୀୟ ଜ୍ଞାନକୋଷ ଯେପରି ଜାତୀୟ ମାନସିକ ସର୍ଜନଶକ୍ତିର ଶ୍ରେଷ୍ଠ ପ୍ରତୀକ ହେବ, ସେହି ଲକ୍ଷ୍ୟରେ ଅଗ୍ରସର ହେବା । ଲକ୍ଷ୍ୟସ୍ଥଳରେ ପହଞ୍ଚିବା ଲାଗି ନିଶ୍ଚୟ ଆମକୁ ଅସମ୍ଭବ ଶ୍ରମ ଓ ସମୟ ବ୍ୟୟ କରିବାକୁ ହେବ । କୌଣସି ଜାତିର ମାନସିକ ସମୃଦ୍ଧି ନ ଘଟିଲେ ବୈଷୟିକ ସମୃଦ୍ଧି ଘଟିବା ଅସମ୍ଭବ । ସାଧାରଣ ଶିକ୍ଷିତ ଓଡ଼ିଆର ମାନସିକ ଦାରିଦ୍ର୍ୟ ଆର୍ଥିକ ଦାରିଦ୍ର୍ୟଠାରୁ ଶତଗୁଣେ ଗ୍ଲାନିକର । ଓଡ଼ିଆ ଜ୍ଞାନକୋଷ ଏ ଦାରିଦ୍ର୍ୟର ନିରାକରଣ କରିବ । ଓଡ଼ିଶାରେ ଗୋଟିଏ ଭଲ ଗ୍ରନ୍ଥାଗାର ନାହିଁ । ଏକ ବୃହତ୍ ଗ୍ରନ୍ଥାଗାରର ସଂକ୍ଷିପ୍ତ ସାରରୂପ ଓଡ଼ିଆ ଜ୍ଞାନକୋଷ ଏ ଅଭାବ ଆଂଶିକ ପୂର୍ଣ୍ଣ କରିବ । ସହରର ଉଚ୍ଚ ଶିକ୍ଷାକେନ୍ଦ୍ରଠାରୁ ଆରମ୍ଭ କରି ପଲ୍ଲୀର କ୍ଷୁଦ୍ର କ୍ଷୁଦ୍ର ପାଠାଗାର ପର୍ଯ୍ୟନ୍ତ ଏହାର ସ୍ଥାନ ସର୍ବତ୍ର ନିର୍ଦ୍ଦିଷ୍ଟ । ସର୍ବତ୍ର ଏହା ଉଚ୍ଚାକାଂକ୍ଷା ଜାଗ୍ରତ କରାଇବ—ନୂତନ ଜୀବନ ଚିନ୍ତା ଫୁଟାଇବ । ନୂତନ ଜ୍ଞାନର ଆଲୋକ ଖେଳାଇବ । ଆମର ଜାତୀୟ ପୁନର୍ଗଠନରେ ଏହା ହେବ ଏକ ଉଜ୍ଜ୍ୱଳ ଭୂମିକା ।

---

